# ମୌନୀ ସାଧୁର ମୂକ ସାଧନା



ଲେଖକ
ଶ୍ରୀ ପ୍ରବୋଧଚନ୍ଦ୍ର ମିଶ୍ର

ଅନୁବାଦକ :
ଅଧ୍ୟାପକ ଶ୍ରୀ ବଂଶୀଧର ମହାନ୍ତି ଏମ୍. ଏ.

ପ୍ରକାଶକ
ଶ୍ରୀ ନରେନ୍ଦ୍ରନାଥ ସୂର
କଟକ ଚଣ୍ଡୀ ରୋଡ଼
କଟକ

ମୂଲ୍ୟ [illegible]




# ଶ୍ରୀ ମଙ୍ଗଳେଶ୍ୱର ମନ୍ଦିର

## ମଙ୍ଗଳାବାଗ କଟକ

୧୯୫୭

# ମୌନୀ ସାଧୁର ମୂକ ସାଧନା

( ସାଧୁଙ୍କର ସତ୍ୟର ଓଁ ବଦାନ୍ୟବାଣୀମାନ ସହିତ )


ଲେଖକ

ଶ୍ରୀ ପ୍ରବୋଧଚନ୍ଦ୍ର ମିତ୍ର

ଅନୁବାଦକ

ଅଧ୍ୟାପକ ଶ୍ରୀ ବଂଶୀଧର ମହାନ୍ତି, ଏମ୍. ଏ.,



ପ୍ରକାଶକ

ଶ୍ରୀ ମହେନ୍ଦ୍ର ନାଥ ଗୁହ

କାଠକଚଣ୍ଡୀ ରୋଡ଼

କଟକ

୧୯୫୨

ମୂଲ୍ୟ ଟ ୦ ୮ ଆଠଅଣା ମାତ୍ର

## ସମ୍ବୋଧନା

ମୌନୀ ସାଧୁ କୌଣସି ଲିଖିତ ପ୍ରଚାର କାର୍ଯ୍ୟ କରି ଯାଇ ନାହାନ୍ତି । ତାଙ୍କର କୌଣସି ଆଶ୍ରମ ଅଥବା ଶିଷ୍ୟ ମଣ୍ଡଳୀ ମଧ୍ୟ ନାହାନ୍ତି । ତାଙ୍କ ଜୀବନର ଇତିହାସ ଏବଂ ଦର୍ଶନ କୌଣସିଠାରେ ଲିପିବଦ୍ଧ ନାହିଁ । ବିଭିନ୍ନ ସମୟରେ ବିଭିନ୍ନ ବ୍ୟକ୍ତି ତାଙ୍କର ସଂସ୍ପର୍ଶରେ ଆସି ନିଜ ନିଜର ଜୀବନରେ ଅନୁପ୍ରେରଣା ଲାଭ କରି ଅଛନ୍ତି । ଭାଷା ଦ୍ୱାରା ତାଙ୍କର ପ୍ରଭାବ ବ୍ୟକ୍ତ କରିବା କଠିନ କାର୍ଯ୍ୟ । ତାହାଁର କାରଣ ଅନ୍ୟାନ୍ୟ ସାଧକଙ୍କ ପରି ସେ ଭାଷାର ସାହାଯ୍ୟରେ ପ୍ରଚାର କରି ନାହାନ୍ତି । ଜୀବନର ଅଧିକାଂଶ ଦିନ ସେ ସମ୍ପୂର୍ଣ୍ଣ ମୌନ ଭାବରେହିଁ ଅତିବାହିତ କରି ଯାଇ ଅଛନ୍ତି । ଲେଖନୀର ସାହାଯ୍ୟ ମଧ୍ୟ ଖୁବ୍ କମ୍ ଗ୍ରହଣ କରିଛନ୍ତି । ନୀରବ ପର୍ଯ୍ୟବେକ୍ଷଣ ଦ୍ୱାରା ଉପଯୁକ୍ତ ସାଧକମାନଙ୍କ ମନର ବିଭିନ୍ନ ସମସ୍ୟା ସେ ସମାଧାନ କରି ଯାଇ ଅଛନ୍ତି । ସାଧକ ନିଜର ମନ ମଧ୍ୟରୁ ନିଜ ପ୍ରଶ୍ନର ଉତ୍ତର ପାଇ ଅଛନ୍ତି, ତାହାଙ୍କର ପ୍ରଭାବରେ । ମଣିଷ ମଧ୍ୟରେ ଆତ୍ମ ବିଶ୍ୱାସ ଜାଗ୍ରତ କରିବା ନିମିତ୍ତହିଁ ଏହି ବ୍ୟବସ୍ଥା । ପରବର୍ତ୍ତୀ ପୃଷ୍ଠାରେ ମୌନୀ ସାଧୁଙ୍କ ଦ୍ୱାରା ପ୍ରଭାବିତ ଜଣେ ବ୍ୟକ୍ତିର ୧୭ ବର୍ଷ ସଂସ୍ପର୍ଶର ସଂକ୍ଷିପ୍ତ ବର୍ଣ୍ଣନା ଦିଆ ହୋଇ ଅଛି । ପାଠକଙ୍କର ଉପକାର ହେଲେ ପ୍ରକାଶକ ମୌନୀ ସାଧୁଙ୍କ ସମ୍ବନ୍ଧରେ ଅଧିକ ମଧ୍ୟ ତଥ୍ୟ ଉପସ୍ଥାପନା କରିବାକୁ ପ୍ରଯତ୍ନ କରିବ ।

କଟକ
୧୯୫୭

ପ୍ରକାଶକ

# ଭୂମିକା

୧୯୦୦—୧୯୫୨

୧୯୩୨ ରୁ ୧୯୫୨ ପର୍ଯ୍ୟନ୍ତ ନୀରବ ସାଧକ "ମୌନୀ" ସାଧୁଙ୍କର ଜୀବନ ଓ ମୂକ ସାଧନାର ଇତିହାସ ପରବର୍ତ୍ତୀ ପୃଷ୍ଠାରେ ସଂକ୍ଷେପରେ ବର୍ଣ୍ଣନା କରା ହୋଇଅଛି । କଟକ ସହରର ମହାନଦୀ ତୀରରେ ଏକ ବୃହତ୍ ଆମ୍ର ବୃକ୍ଷର କୋଳରେ ଗୋଟିଏ ଛୋଟ ମନ୍ଦିର ଅଛି । ମୌନୀ ବାବାଙ୍କ ବିଂଶବର୍ଷ ବ୍ୟାପୀ ସାଧନାର ଇତିହାସ ଏହି ମନ୍ଦିରର ପ୍ରତ୍ୟେକ ପ୍ରାଚୀରରେ ସୁପ୍ତ ରହିଅଛି । ଭବିଷ୍ୟତର ଐତିହାସିକ ଏହି ସ୍ଥାନରେ ଇତିହାସର ଅତୀତ ହଜାର ବର୍ଷର ଏକ ହଜି ଯାଇଥିବା ପତ୍ରକୁ ଧନେ ଅନୁସନ୍ଧାନ କଲେ ଖୋଜି ପାଇବେ ।

ତା ୪ ରିଖ ଅକ୍ଟୋବର ୧୯୩୨ ସାଲରେ ଅନ୍ତରର ଏକ ଆହ୍ୱାନରେ ସମାଜ ସେବୀ ସ୍ୱାମୀ ଅଖଣ୍ଡାନନ୍ଦ ଗିରି ପୃଥିବୀ ନିକଟରୁ ପ୍ରଥମ ବିଦାୟ ନେଲେ । ସେହି ଦିନଠାରୁ ମଙ୍ଗଳେଶ୍ୱରଙ୍କର ନିସ୍ତବ୍ଧ କ୍ଷୁଦ୍ର ମନ୍ଦିର ପ୍ରକୋଷ୍ଠରେ କଠୋର ମୌନବ୍ରତ ସାଧନାରେ ସେ ଜୀବନର ବାକି ଦିନଗୁଡ଼ିକ କଟାଇ ଦେବାକୁ ଦୃଢ଼ସଙ୍କଳ୍ପ କରିଥିଲେ ।

ତାଙ୍କ ସାଧନାର ଏବଂ ମୂକ ପ୍ରଗୃତର ଅନ୍ତଃସ୍ଥଳହିଁ ହେଉଛି ଅନ୍ତ ପ୍ରଚେଷ୍ଟା ଏବଂ ସମ୍ପ୍ରସାରଣ । "ଖୋଜ ବାହାର କର ତୁମ ସତ୍ୟକାରର ଅଭାବ । ଯେତେବେଳେ ପ୍ରକୃତରେ ତୁମେ ଯେହି

ଅଶ୍ୱର ସନ୍ଧାନ ପାଇବ , ସେତେବେଳେ ତାହାର ନିବୃତ୍ତି ହେବ ।" ମୂକ ସାଧନାର ଦର୍ଶନ ହିଁ ହେଉଛି ପର୍ଯ୍ୟବେକ୍ଷଣ । କ୍ରମାନ୍ୱୟରେ ଚିନ୍ତାର ପର୍ଯ୍ୟବେକ୍ଷଣ ଦ୍ୱାରା ଚିନ୍ତାର ଲୋପ ହୁଏ । ସାଧନା ଅଗ୍ରସରର ସଙ୍ଗେ ସଙ୍ଗେହିଁ ସାଧକ ଅନାବଶ୍ୟକ ଚିନ୍ତାକୁ ମନରୁ ଦୂରକୁ ଫିଙ୍ଗି ଦିଏ । ଦିନକୁ ଦିନ ଅବଶ୍ୟେକୀୟ ଚିନ୍ତାର ସଂଖ୍ୟା ମଧ୍ୟ କମିଯାଏ । ଏହିପରି କରି ମନୁଷ୍ୟ ଜାଗ୍ରତ ଜୀବନ ଯାପନ କରି ପାରେ । ସାଧନାର ଶେଷରେ ମନର ଲୋପ ହୁଏ । ଅସ୍ତିତ୍ୱର ମଧ୍ୟ ଶେଷ ସେହିଠାରେହିଁ ।

ମୌନୀ ସାଧୁଙ୍କର ସାଧନାର ଶେଷ ହେଲା ୧୯୫୨ ସାଲରେ । ସେଥିଯୋଗୁଁ ସେ ସ୍ୱଇଚ୍ଛାରେ ନିଜର ନିର୍ଦ୍ଧାରିତ ନିର୍ଦ୍ଦିଷ୍ଟ ଦିନରେ, ବିଶ୍ୱ ନିକଟରେ ଶେଷ ବିଦାୟ-ବାଣୀ ଦାନକରି ଦେହ ରକ୍ଷା କରୁ ଅଛନ୍ତି । ବିଂଶ ଶତାବ୍ଦୀରେ ଆତ୍ମ-ବିଶ୍ୱାସର ଏହି ଅଭିନବ ଜ୍ୱଳନ୍ତ ଦୃଷ୍ଟାନ୍ତର ଇତିହାସ ଏହି ପୃଷ୍ଠା ଗୁଡ଼ିକରେ ପ୍ରଥମ ପାଇବାକୁ ହେବ ।

---

# ମୌନୀ ସାଧୁର ମୂକ ସାଧନା

ବିଶ୍ୱର ପୃଷ୍ଠଭୂମିରେ ଇତିହାସର ପୁନରାବୃତ୍ତି ହୋଇଛି ବାର ବାର । ଆଜକୁ ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବେ ଗୌତମ ବୁଦ୍ଧଙ୍କର ଏକ ଅନାଦୃତ ବାଣୀ—ଇତିହାସର ପୃଷ୍ଠାରେ କେଉଁଠି ହଜି ଯାଇଛି, ଐତିହାସିକଗଣ ଏବଂ ବୁଦ୍ଧ ପଥଗାମୀମାନେ ତାହାର କୌଣସି ସନ୍ଧାନହିଁ କରି ନାହାନ୍ତି । ଗୌତମ ବୁଦ୍ଧ ସେହି ଦିନହିଁ କହିଥିଲେ—

"ଭୁଲ ଯାଅନା ହେ ଭିକ୍ଷୁ ଓ ଶିଷ୍ୟ ମଣ୍ଡଳୀ—ବୁଦ୍ଧଙ୍କର ଆବିର୍ଭାବ ଏହି ପ୍ରଥମ ନୁହେଁ । ଗୌତମ ବୁଦ୍ଧଙ୍କର ଜନ୍ମ ହେବାର ପୂର୍ବେ ମଧ୍ୟ ଅନେକ ବୁଦ୍ଧ ଜନ୍ମି ଥିଲେ । ତାଙ୍କର ପ୍ରାଦୁର୍ଭାବର ପରେ ମଧ୍ୟ ଆହୁରି ଅନେକ ବୁଦ୍ଧ ଏହି ପୃଥିବୀରେ ଜନ୍ମ ହେବେ । ଇତିହାସ ସେହି ସବୁ ଅତୀତ ଏବଂ ଭବିଷ୍ୟତର ବୁଦ୍ଧମାନଙ୍କର ହୁଏତ କୌଣସି ଖବର ମଧ୍ୟ ରଖିବେ ନାହିଁ । ହୁଏତ ସାମାନ୍ୟ ଖବର ରଖିଲେ ରଖି ପାରନ୍ତି । ତଥାପି ପ୍ରତ୍ୟେକ ବୁଦ୍ଧହିଁ ସେମାନଙ୍କର ଜନ୍ମିବାର ଉଦ୍ଦେଶ ପୂର୍ଣ୍ଣ କରି ସାରି ଏହି ପୃଥିବୀରୁ ବିଦାୟ ନେବେ ।"

କଟକ ସହରରେ, ଖରସ୍ରୋତା ମହାନଦୀର ତୀରରେ, ଏକ ବୃହତ ଆମ୍ର ବୃକ୍ଷର କୋଳରେ ଗୋଟିଏ ଛୋଟ ମନ୍ଦିର ଅଛି ।

ନୀରବ ସାଧକ "ମୌନୀବାବା"ଙ୍କର ବଂଶବର୍ଷ ବ୍ୟାପୀ ସାଧନାର ଇତିହାସ ଏହି ମନ୍ଦିରର ପ୍ରତ୍ୟେକ ପଥରରେ ଅଦୃଶ୍ୟ ଲେଖନୀରେ ଲେଖା ଅଛି । ଭବିଷ୍ୟତରେ ଐତିହାସିକ,ଏହି ସ୍ଥାନରେ ଇତିହାସ ଅଡ଼େଇ ହଜାର ବର୍ଷର ହଜି ଯାଇଥିବା ପୃଷ୍ଠାକୁ ଯଦି ଅନୁସନ୍ଧାନ କଲେ ଖୋଜି ପାଇବେ ।

× × × ×

( ୧ )

ଆଜକୁ ପ୍ରାୟ ପଚଶ ବର୍ଷ ପୂର୍ବେ, ପୂର୍ବ ବଙ୍ଗର ବରିଶାଲ ଜିଲାର ଜଣେ ଯୁବକ, ଇତିହାସର ଏକ ବିସ୍ମୃତ ଅଧ୍ୟାୟକୁ ପୁନର୍ଜୀବିତ କରିବାକୁ ଆସିଥିଲେ ଓଡ଼ିଶାର ରାଜଧାନୀ କଟକ ସହରକୁ । ଗୈରିକ ବସନରେ, ଏ ଦେଶର ସନ୍ନ୍ୟାସୀ ସମ୍ପ୍ରଦାୟର ଅଗଣିତ ଜନ ସମୁଦ୍ର ମଧ୍ୟରେ ସ୍ୱାମୀ ଅଖଣ୍ଡାନନ୍ଦଙ୍କର ସ୍ଥାନ କେଉଁଠି । ସନ୍ନ୍ୟାସୀ ଅଥବା ଗୃହସ୍ଥ କେହି ହେଲେ ସେଦିନ ତାହାଙ୍କର ସନ୍ଧାନ କରି ନାହାନ୍ତି । ସନ୍ଧାନ କରିବାର ପ୍ରୟୋଜନ ମଧ୍ୟ ନ ଥିଲା । ସମାଜ ସେବକ ଅନ୍ୟାନ୍ୟ ସାଧୁମାନଙ୍କ ପରି ଅଖଣ୍ଡାନନ୍ଦ ସେଦିନ କର୍ମ ପ୍ରେରଣାରେ ଅଭିଭୂତ ଥିଲେ । ଅନାଥ ଶିଶୁମାନଙ୍କୁ ଗୃହଦାନ, ଅନାଦୃତ ଅସ୍ପୃଶ୍ୟମାନଙ୍କୁ ଶିକ୍ଷାଦାନ, ପୀଡ଼ିତ ଓ ଦୁଃଖୀମାନଙ୍କ ଦୁଃଖ ନିବାରଣହିଁ ସେଦିନ ଥିଲା ତାଙ୍କ ଜୀବନର ପରମ ଉଦ୍ଦେଶ୍ୟ । ତାଙ୍କର ପରବର୍ତ୍ତୀ ଜୀବନ, ସାଧନା ଏବଂ ମୌନ ବ୍ରତର କୌଣସି ଲକ୍ଷଣ ସେଦିନ ଦେଖା ଯାଇ ନାହିଁ । ଗୌତମ ବୁଦ୍ଧଙ୍କର କରୁଣା ଓ ବିଶ୍ୱମୈତ୍ରୀର କଳ୍ପିତ ଅଭାସ ପାଇବାକୁ ମିଳିଥିଲା ମାତ୍ର । ତାଙ୍କର ପୂର୍ବ ଜୀବନ ଏବଂ

ସମାଜ ସେବାର ଦିନମାନଙ୍କରେ ମଧ୍ୟ କୌଣସି ବିଶେଷ ଉଲ୍ଲେଖ ଯୋଗ୍ୟ ଘଟଣାର ନିଦର୍ଶନ ଦେଖିବାକୁ ମିଳେ ନାହିଁ ।

× × × ×

(୩)

୧୯୩୨ ମସିହା ଅକ୍ଟୋବର ମାସ ୪ତାରିଖ, ମୌନୀବାବାଙ୍କର ଜୀବନର ଏକ ସ୍ମରଣୀୟ ଦିନ । ତାଙ୍କର ନିଜ କଥାରେ—

"ଅନ୍ତରରୁ ଆଜ ମୁଁ ଏକ ବାଣୀ ପାଇଛି । ହୃଦୟ ବାଣୀ, ଅତ୍ମାର ଆହ୍ୱାନ । ଛାଡ଼ିଦିଅ ବାହାର ସମାଜ ସେବା । ଗୃହ ଦାନ ଅଭ୍ ଶିକ୍ଷା ଦାନ କରି ଅନାଥ ଓ ଅସ୍ପୃଶ୍ୟମାନଙ୍କର ଦୁଃଖ ନିବାରଣ କରିବାକୁ ତୁମ୍ଭେ ପାରିବ ନାହିଁ । ସେ ଦୁଃଖର ନିବାରଣ ହେବ ସେତିକିବେଳେ, ଯେତେବେଳେ ତୁମ୍ଭେ ନିଜ ଅନ୍ତରର ପ୍ରଦୀପ ଜାଳାଇ ସେମାନଙ୍କର ଅନ୍ଧାର ଘରେ ପକାଇବ ଆଲୋକ । ଆଜଠାରୁ ବାରବର୍ଷ ମୌନ ସାଧନାରେ ଏହି କ୍ଷୁଦ୍ର ମନ୍ଦିରର ପ୍ରାଚୀର ସୀମାରେ ନିଜକୁ ରଖିବାକୁ ହେବ ଅବଦ୍ଧ । ଅଜଗର ପରି ଜୀବନ ଯାପନ କର । ତୁମ୍ଭର ନିଜ ଇଚ୍ଛାରେ ତୁମ୍ଭର ଦୈହିକ ପ୍ରୟୋଜନ ମେଣ୍ଟିପିବ ଏହି ସ୍ଥାନରେହିଁ ।"

ସ୍ୱାମୀ ଅଖଣ୍ଡାନନ୍ଦଗିରି ଅନ୍ତରର ଏହି ଆହ୍ୱାନରେ ସେଦିନ ଉତ୍ତର ଦେଲେ । ଦୀର୍ଘ ଦ୍ୱାଦଶ ବର୍ଷର ଏହି କଠୋର ସାଧନାର ଇଙ୍ଗିତ ତାଙ୍କର ହୃଦୟରେ କୌଣସି ସନ୍ଦେହର ମଧ୍ୟ ଉଦ୍ରେକ କଲାନାହିଁ । ନୀରବ ମୂକାତ୍ମା ବୁଦ୍ଧଙ୍କର ପଥହିଁ ଅନୁଗମନ କଲେ ।

ମହାନଦୀର ବାଲୁକାମୟ ଭୂମିରେ, ମଙ୍ଗଳେଶ୍ୱରଙ୍କର ସେହି ନିସ୍ତବ୍ଧ କ୍ଷୁଦ୍ର ମନ୍ଦିର ପ୍ରକୋଷ୍ଠରେ, ବିଂଶ ଶତାବ୍ଦୀର

ଅନୈତିହାସିକ ବୁଦ୍ଧ, ମାନବ-ଦୁଃଖର ଘରେ ଆଲୋକ ଜାଳିବାର ସାଧନା ନିମିତ୍ତ, ସେଦିନ ବିଶ୍ୱର ମାନବମଣ୍ଡଳୀର ନିକଟରୁ ପ୍ରଥମ ବିଦାୟ ନେଲେ । ଗୌତମ ବୁଦ୍ଧଙ୍କର ଐତିହାସିକ ବୃକ୍ଷ, ଅଢ଼େଇ ହଜାର ବର୍ଷ ପରେ ଆଜି ଏକ ନଦୀ ତୀରରେ ପୁନର୍ଜୀବିତହେଲା । ମନ୍ଦିରର ନୀରବ ପ୍ରକୋଷ୍ଠରେ ଓ ସେହି ବିଶାଳ ଆମ୍ର ବୃକ୍ଷର ଛାୟାରେ ମୌନୀବାବାଙ୍କର ଅଦ୍ଭୁତ ସାଧନାର ଦିନ, ମାସ ଏବଂ ବର୍ଷଗୁଡ଼ିକ ଲୋକଚକ୍ଷୁର ଅନ୍ତରାଳରୁ କଟିଯିବାକୁ ଲାଗିଲା ।

× × × ×

(୪)

ପରବର୍ତ୍ତୀ ଦିନଗୁଡ଼ିକର ଇତିହାସ, ଘଟଣା ବହୁଳ ନୁହେଁ । ତାଙ୍କର ନିଜର ଭାଷାରେ:—

"ଏ ସ୍ଥାନରେ ଏପରି ଗଛ ନାହିଁ ଯାହାର ପତ୍ର ମୁଁ ନ ଖାଇଛି । ଘାସ ଏବଂ ପତ୍ର ଖାଇ ମାସ ପରେ ମାସ କଟି ଯାଇଛି । ବନ୍ଧୁ, ଦର୍ଶକ ଏବଂ ପ୍ରତିବେଶୀଗଣ ଅବଜ୍ଞା କରି ଚାଲି ଯାଇଛନ୍ତି । ଉପହାସ କରିଛନ୍ତି । କହିଛନ୍ତି, ବର୍ଷ ଗୋଟିଏ କାଟି ପାରିବେ ନାହିଁ, ବାର ବର୍ଷତ ଦୂରର କଥା । ସେ କାଳର ଦିନ ଚାଲି ଯାଇଛି । ବିଂଶ ଶତାବ୍ଦୀରେ ଏ ସବୁ ସାଧନା ହୁଏ ନାହିଁ ।"

ବୁଦ୍ଧଙ୍କର ଦୃଢ଼ ପ୍ରତିଜ୍ଞା ଏବଂ ଅସୀମ ମାନସିକ ଶକ୍ତିହିଁ ସେହିଦିନ ତାଙ୍କୁ ବଞ୍ଚାଇ ରଖିଥିଲା । ମଣିଷର ଅବଜ୍ଞା ଏବଂ ଅବିଶ୍ୱାସ ତାଙ୍କୁ ବିଚଳିତ କରି ପାରି ନଥିଲା । ୪ତାଋଷି ଅଷ୍ଟାବକ୍ରର ବାଣୀ ଥରେ ଥରେ ତାଙ୍କୁ ପ୍ରେରଣା ଦେଇଛି । "ଦୁଃଖୀର ଅନ୍ଧାର ଘରେ ତୁମକୁ ଜାଳିବାକୁ ହେବ ଆଲୋକ, ଅନ୍ୟଗର ପର ଜୀବନ ଯାପନ

କର ।" ସକଳ ବାଧା ବିପତ୍ତି ଅତିକ୍ରମ କରି; ଏହିପରି ଭାବରେ ବର୍ଷ ପରେ ବର୍ଷ କଟିଲା । ଅଜଗରର ଧନ କାହାର ଅପେକ୍ଷାରେ ଅଟକି ରହିଲା ନାହିଁ । ମହାନଦୀର ଖରସ୍ରୋତ ପରି, ମୌନୀ ସାଧୁର ସାଧନାର ଧନସ୍ତୁପ ନୀରବ ଭାବରେ ଅତିବାହିତ ହୋଇଗଲା ।

× × × ×

(୪)

ଦୀର୍ଘ ଦ୍ୱାଦଶ ବର୍ଷର ଏହି ଅଦ୍ଭୁତ ସାଧନାର ଇତିହାସ ଲିପିବଦ୍ଧ କରିବା ସହଜ କାର୍ଯ୍ୟ ନୁହେଁ । ମାନସିକ ରାଜ୍ୟର କେତେ ନୂତନ ପଥର ସନ୍ଧାନ ନୀରବ ପର୍ଯ୍ୟବେକ୍ଷଣରେ ସେ ଆବିଷ୍କାର କଲେ, ତାହାର ଇଙ୍ଗିତ କେବଳ ବାହାରେ କେତେଗୋଟି ମୂକ ନିର୍ଦ୍ଦେଶରେହିଁ ବିଶ୍ୱର ଗୋଚର ହୋଇଥିଲା । ମୌନ ସାଧନାର କୋଠରତା ବର୍ଷ ପରେ ବର୍ଷର ଅନୁଭୂତିର ଅଗ୍ରସରର ସଙ୍ଗେ ସଙ୍ଗେ ବଢ଼ିବାକୁ ଲାଗିଲା । କାଗଜ ଏବଂ ଲେଖନୀ ସେ ଅତିଶୀଘ୍ର ପରିତ୍ୟାଗ କଲେ । ଅନ୍ୟ ଲୋକମାନେ ଲେଖିବାର ସାମଗ୍ରୀ ଆଣିଲେ ମଧ୍ୟ ସେ ଲେଖନୀ ଗ୍ରହଣରେ ଅନିଚ୍ଛା ପ୍ରକାଶ କରନ୍ତି । ସେ ଶୀଘ୍ର ମଧ୍ୟ ଉପଲବ୍ଧି କଲେ ଯେ ମନର ପ୍ରତ୍ୟେକ କ୍ରିୟାର ନିବୃତ୍ତିହିଁ ପ୍ରକୃତ ମୌନ ସାଧନାର ଉଦ୍ଦେଶ୍ୟ । ବାହାରର ଶବ୍ଦ ଯେତେବେଳେ କ୍ଷୀଣ ହୋଇଯାଏ ସେତେବେଳେହିଁ ମଣିଷ ଭିତରର ଶବ୍ଦକୁ ଠିକ ଠିକ ଭାବରେ ପର୍ଯ୍ୟବେକ୍ଷଣ କରି-ପାରେ । ସାଧନାର ଶେଷ ସେତିକିବେଳେ ଯେତେବେଳେ କି ଭିତରର ସକଳ ଆଲୋଡ଼ନର ହୋଇଯାଏ ସମାପ୍ତି । ମନର

ଉପରେ ସେତେବେଳେ ହୁଏ ଜୟ ଲାଭ । ମନର ମୃତ୍ୟୁହିଁ ଜ୍ଞାନ ଲାଭର ଏକମାତ୍ର ଉପାୟ । ତାଙ୍କର ନିଜ ଭାଷାରେ—

"ବହୁ ବର୍ଷ ମନୁଷ୍ୟ ମନର ସଙ୍ଗେ ସହବାସ କରିଛି ତାକୁ ଛାଡ଼ି ମନୁଷ୍ୟ ସେ ହେତୁ ରହି ପାରେ ନାହିଁ । ସାଧନା ଦ୍ୱାରା ମନର ଏହି ଅସକ୍ତିକୁ ଆମ୍ଭମାନଙ୍କୁ ଦୂର କରିବାକୁ ହେବ । ସେତେବେଳେହିଁ ଆମ୍ଭେମାନେ ସ୍ୱାଧୀନ ହେବ । ସତ୍ୟକାର ଶାନ୍ତି ଲାଭ କରିବୁ ।"

ବର୍ଷ ପରେ ବର୍ଷ ଏହି ଅସକ୍ତିଠାରୁ ମୁକ୍ତି ଲାଭ କରିବାର ପ୍ରଚେଷ୍ଟା ସେ କରି ଯାଇଛନ୍ତି । ତାଙ୍କ ସାଧନାର ମୂକ ଇଙ୍ଗିତହିଁ ତାହାର ପ୍ରମାଣ । ମୌନ ସାଧନାର ଦିନଗୁଡ଼ିକରେ ମଧ୍ୟ ବିଶ୍ୱର ଦୁଃଖ ବ୍ୟଥା ତାହାଙ୍କୁ ବ୍ୟଥିତ କରିଛି । ନିଜ ଅନ୍ତରରେ ପ୍ରଦୀପ ତାଙ୍କର ଯେତେ ଯେତେ ଜଳି ଉଠିଛି; ଦୁଃଖୀର ଅନ୍ଧାର ଘରେ ତାଙ୍କର ବିନା ପ୍ରଚେଷ୍ଟାରେ ସେହି ପ୍ରଦୀପର ଆଲୋକ ଯାଇ ପହଞ୍ଚି ଯାଇଛି ।

× × ×

(୬)

ବୁଦ୍ଧଙ୍କ ପରି ଦୃଢ଼ ପ୍ରତିଜ୍ଞା ଏବଂ ଆତ୍ମାର ଅନନ୍ତ ଶକ୍ତିରେ ବିଶ୍ୱାସୀ ମୌନୀ ସାଧୁଙ୍କର ମୌଳିକ ସାଧନାର ଅନ୍ତସ୍ଥଳହିଁ ହୋଇଛି ମୂକ ପ୍ରଚେଷ୍ଟା । ବୁଦ୍ଧଙ୍କ ପରି ମଧ୍ୟ ସେ ଆଧ୍ୟାତ୍ମିକ ଜଗତର ବିଭିନ୍ନ ଅପ୍ରାସଙ୍ଗିକ ବିଷୟରେ କୌତୁହଳକୁ ଅନୁତ୍ସାହିତ କରିଛନ୍ତି । ସାଧକକୁ ସେ ବାରମ୍ବାର ଇଙ୍ଗିତ ଦେଇଛନ୍ତି—

ଖୋଜି ପକା ନିଜକୁ । ସାଧନାର ପ୍ରୟୋଜନ ହେବ ସେତେବେଳେ ଯେତେବେଳେ ନିଜ ମଧ୍ୟରେ ସତ୍ୟକାର କୌଣସି ଅଭାବ ଅନୁଭବ କରିବ । ଯେତେକ୍ଷଣ ସେ ଅଭାବ ଅନୁଭବ ନ ହୋଇଛି ସେତେବେଳ ପର୍ଯ୍ୟନ୍ତ ସାଧନାର କୌଣସି ପ୍ରୟୋଜନ ନାହିଁ । ତେତେବେଳ ପର୍ଯ୍ୟନ୍ତ ଆଳସ୍ୟ ଏବଂ ବିଳାସହିଁ ମଣିଷକୁ ଏହିସବୁ ଆଲୋଚନାରେ ପ୍ରବୃତ୍ତ କରେ ।"

କଠୋର ଭାଷାରେ ସେ ସେମାନଙ୍କୁ ତିରସ୍କାର କରିଛନ୍ତି । କହିଛନ୍ତି, "ଭୋଗ କର । ଚରମ ଭୋଗର ସନ୍ଧାନରେ ଆଗେଇ ଯାଅ । ପଥ ସେତେବେଳେ ଶେଷ ହେବ ସେତେବେଳେହିଁ ପାଇବ ଶାନ୍ତି ।" ସେ ହେତୁ ମୌନୀ ସାଧୁଙ୍କର ପ୍ରଭାବ କେବଳ ସେହି ସବୁ ଲୋକମାନଙ୍କ ମଧ୍ୟରେହିଁ ସୀମାବଦ୍ଧ ଯେଉଁମାନେ ସତ୍ୟକାର କୌଣସି ଅଭାବ ଜୀବନର ଅନୁଭବ କରିଛନ୍ତି । ୪ ତାରିଖ ଅକ୍ଟୋବର ଅଧିବେଶନରେ ସେ ଫେରି ଫେରି ଜବାବ ଦେଇଛନ୍ତି । ତାଙ୍କ ସତ୍ୟର ସନ୍ଧାନ ପ୍ରକୃତ ଦୁଃଖୀ ରଜନୀଶ । ତାଙ୍କ ପ୍ରଦୀପର ଆଲୋକ Purchased with the assistance ନିବାରଣ କରିବ ।

× × × ×

(୭)

ଅଭାବରେ ପଡ଼ି ମଣିଷ ସେହେତୁ ତାଙ୍କର ପାଖକୁ ଆସିଛି । ସତ୍ୟର ସନ୍ଧାନ ପାଇଁ ନୁହେଁ, ଶାନ୍ତିର ସନ୍ଧାନରେ । ଜୀବନର ଅନୁଭୂତି ଦେଇ ଲବ୍ଧ ଯେଉଁ ଜିନିଷର ସେ ଆବିଷ୍କାର କରିଛନ୍ତି, ତାହାର ପ୍ରକାଶ କେବଳ ଅନୁଭୂତି ଦ୍ୱାରାହିଁ ସମ୍ଭବ । ତାଙ୍କ ଶିକ୍ଷାରେ ସେଥିପାଇଁ ବାକ୍ୟର ଆଡ଼ମ୍ବର ନାହିଁ । ଭାବ

ପ୍ରବଣତା ଏବଂ ଉଚ୍ଛ୍ୱାସର ହାଲୁକା ପବନ ସେଠାରେ ସ୍ପର୍ଶ ପର୍ଯ୍ୟନ୍ତ କରିନାହିଁ । ଅନନ୍ତ ଦୃଷ୍ଟି ଦେଇ ସେ ମଣିଷକୁ ପରୀକ୍ଷା କରିଛନ୍ତି । ପ୍ରକୃତ ଅଭାବଗ୍ରସ୍ତ ବ୍ୟକ୍ତିର ଅଭାବ ଦୂର କରିଛନ୍ତି । କୌତୂହଳ ନେଇ ଯେଉଁମାନେ ତାଙ୍କ ନିକଟକୁ ଆସିଛନ୍ତି, ହତାଶ ହୋଇକରି ସେମାନେ ଫେରି ଯାଇଛନ୍ତି । ଅଭାବଗ୍ରସ୍ତ ଲୋକଙ୍କୁ ସେ କହିଛନ୍ତି :—

"ଖୋଜି ବାହାର କର ତୁମର ସତ୍ୟକାରର ଅଭାବ । ଯେତେବେଳେ ସତକୁସତ ତୁମେ ସେହି ଅଭାବର ସନ୍ଧାନ ପାଇବ ସେତେବେଳେହିଁ ତାହାର ନିବୃତ୍ତି ହେବ ।"

ଏହି ପ୍ରକାରେ ଅପରୀର ଅଜ୍ଞାତସାରରେ ମଣିଷକୁ ସେ ସତ୍ୟର ଗବେଷକ କରି ତୋଳିଛନ୍ତି । ଅଭାବର ସନ୍ଧାନରେ ମଣିଷ ଯେତେ ଯେତେ ଆଗେଇ ଯାଉଛି ମନର ସ୍ତରକୁ ସେତକ ଏକ ପରେ ଏକ ସ୍ତର ଅତିକ୍ରମ ହୋଇଯାଉଛି । ପଟ ପରେ ପଟ ପରିବର୍ତ୍ତନ ହୋଉଛି । ସମାନ୍ୟ ଅଭାବଠାରୁ ମଣିଷ ନୂତନ ନୂତନ ଅଭାବର ସନ୍ଧାନ ପାଉଛି । ତଥାପି ସନ୍ଧାନର ହୋଇ ନାହିଁ ଶେଷ । ପରିପ୍ରଶ୍ନର ପଥରେ ସାଧନାର ଆରମ୍ଭ ହୋଇ ଯାଉଛି ।

ମିଥ୍ୟାରେ ଅଭାବର ନିବୃତ୍ତି ସନ୍ଧାନରେ ଯେଉଁମାନେ ଆସିଥିଲେ, ସେମାନେ ସତ୍ୟକାର ଅଭାବର ସନ୍ଧାନରେ ସେହେତୁ ଆଗେଇ ପଡ଼ିଲେ । ଅନ୍ତରକୁ ଖୋଜିବା ପାଇଁ ଡ଼ାକ ପଡ଼ିଗଲା । ମଣିଷ ଯେତେବେଳେ ଯାଇଁ ବୁଝି ପାରିଲା—

ଯାହା ଖୋଜୁଛି ତାହା ଭୁଲ କରି ଖୋଜୁଛି ।
ଯାହା ପାଉଛି ତାହା ଖୋଜୁ ନାହିଁ ।

ସରଳ ଅଗନ୍ତୁକର ଜୀବନରେ ଯେଉଁ ପରିବର୍ତ୍ତନର ଅଙ୍କ ସୂଚନା ହେଲା ସେ କେବଳ ଅନ୍ୟଜଣଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଏବଂ ଅନୁଭବର ସାମାନ୍ୟ ସମ୍ପ୍ରସାରଣର ଫଳରେ । ସେହି ସମ୍ପ୍ରସାରଣହିଁ ତାହାଙ୍କୁ ଦେଲା ପ୍ରଥମ ଧକ୍କା । ତାହାପରେ ସେ ଅଗେଇ ଚଳିଲା । ହୁଏତ ଭୁଲିଗଲା ତାହାର ପରିବର୍ତ୍ତନର କାରଣ । କିନ୍ତୁ ସେଥିରେ ତାହାର କିଛି ଯାଏ ଆସେ ନାହିଁ । ଶିକ୍ଷାର ଆରମ୍ଭ ହୋଇ ଯାଇଛି । ସେ ନିଜେହିଁ ତାହାର ସନ୍ଧାନ ପାଇଛି । ଯେତେବେଳ ପର୍ଯ୍ୟନ୍ତ ସେ ସମ୍ପୂର୍ଣ୍ଣ ନିସ୍ତମସ୍ତ ହୋଇନାହିଁ ସେତେବେଳ ପର୍ଯ୍ୟନ୍ତ ତାହାର ବିରାମ ନାହିଁ । ଇଚ୍ଛା ଥାଉ ବା ନ ଥାଉ ସାଧକ ତାହାକୁ ହେବାକୁହିଁ ହେବ । ଚରମ ଅଭାବର ସନ୍ଧାନ ଯେତେବେଳେ ସେ ପାଇଛି ସେତେବେଳେ ବିଶ୍ୱର ଅନ୍ୟ କୌଣସି ଜିନିଷ ତାକୁ କ୍ଷଣିକ ଭଲ ଲାଗିବ ନାହିଁ । ଆପଣାର ସନ୍ଧାନରେ ସେ ପାଗଳ ହୋଇ ଘୂରି ମରିବ । ଅପୂରନ୍ତ ପଥର ପଥିକ ତାକୁ ହେବାକୁହିଁ ହେବ ।

× × × ×

(୮)

ଗୌତମ ବୁଦ୍ଧଙ୍କ ପରି ସେ କହି ଯାଇଛନ୍ତି, "ନିଜକୁ ବିଶ୍ୱାସ କର ।" ଭିକ୍ଷାପ୍ରିୟର ବାହାରର ସାହାଯ୍ୟ ପ୍ରତ୍ୟାଶାରେ ରହିନାହିଁ । ଭଗବାନଙ୍କର ସନ୍ଧାନରେ କିଏ ଅଗ୍ରସର ହେଉଛି ? ନିଜକୁ ଭଗବାନରୂପେ ତିଆରି କର । ସେତେବେଳେହିଁ ଭଗବାନ ଲାଭ କରିବ । ତଥାଗତ ମଧ୍ୟ କହି ଯାଇଥିଲେ, "ମୋତେ ପୂଜା

କର ନାହିଁ । ମୋର କଥା ଅନୁସାରେ କାର୍ଯ୍ୟକର । ନିଜକୁ ପୂଜା କର । ସେଥିପାଇଁ ମୌନୀ ସାଧୁ ମଣିଷର ଅଜ୍ଞାନତାର ପଥ ରୋଧ କରିବା ନିମିତ୍ତ ନିଜର କୌଣସି ବ୍ୟକ୍ତିଗତ ଚିହ୍ନ ଛାଡି ଯାଇ ନାହାନ୍ତି । କାରଣ ଭବିଷ୍ୟତରେ ଗୌତମ ବୁଦ୍ଧଙ୍କ ପରି ମଣିଷ ବୁଦ୍ଧଙ୍କର ପଥକୁ ଭୁଲିଯାଇ କେବଳ ବୁଦ୍ଧଙ୍କର ଚିତ୍ରପଟକୁହିଁ ପୂଜା କରେ । ମଣିଷକୁ ସେ ଏହିପରି ଭାବରେହିଁ ଆତ୍ମବିଶ୍ୱାସର ପ୍ରେରଣା ଦେଇ ଯାଇ ଅଛନ୍ତି ।

× × × ×

(୯)

ମୌନୀବାବାଙ୍କର ମତରେ ମଣିଷର ଜୀବନରେ ପ୍ରକୃତ ଦୁଃଖର ସ୍ଥାନ ଖୁବ୍ ଉଚ୍ଚରେ । ସେହି ଭାଗ୍ୟବାନ ଯିଏ ଜୀବନରେ ଦୁଃଖ ଲାଭ କରିଛି । ଦୁଃଖ ଯାହାକୁ ମୁହ୍ୟମାନ କରି ପକାଇଛି ସେ ପ୍ରକୃତରେହିଁ ହତଭାଗ୍ୟ । ଦୁଃଖକୁ ଯେ ପ୍ରାଣେ ପ୍ରାଣେ ଅନୁଭବ କରିଛି, ଦୁଃଖ ମୋଚନ ପଥର ସନ୍ଧାନରେ ସେହି କେବଳ ବାହାରି ପାରେ । ଏହି ସନ୍ଧାନର ପଥହିଁ ସାଧନାର ପଥ । ମନର ଅଗଣିତ ଚିନ୍ତାଧାରା ଆମ୍ଭମାନଙ୍କର ଅଜ୍ଞାତସାରରେ, ଆମ୍ଭମାନଙ୍କର ଅନ୍ତଃର ବାହାରେ ସର୍ବଦା ପ୍ରବାହିତ ହୋଇ ଯାଉଛି । ମନହିଁ ଦୁଃଖର ପଛଭୂମି । ଚିନ୍ତାର ସମଷ୍ଟି ନେଇ ମନ, ସୁତରାଂ ଚିନ୍ତାକୁ ଆୟତ୍ତ ମଧ୍ୟରେ ଆଣିଲେହିଁ ମନ ଆୟତ୍ତାଧୀନ ହୁଏ । ଚିନ୍ତା ଉପରେ କର୍ତ୍ତୃତ୍ୱ କରିବାକୁ ହେଲେ ମନର ପର୍ଯ୍ୟବେକ୍ଷଣ ଆବଶ୍ୟକ । ପ୍ରକୃତ ପର୍ଯ୍ୟବେକ୍ଷଣହିଁ ସାଧନାର

ମୂଳମନ୍ତ୍ର । ସଦାସର୍ବଦା ମନପ୍ରତି ଲକ୍ଷ୍ୟ ରଖିଲେ ମଣିଷ ପ୍ରକୃତପକ୍ଷେ ଜାଗ୍ରତ ଭାବରେ କାର୍ଯ୍ୟ କରିପାରେ । ଅନାବଶ୍ୟକ ଚିନ୍ତା ଅପେ ଅପେ ଲୋପ ହୋଇଯାଏ । ମନ କ୍ରମେ ସାମ୍ୟ ଅବସ୍ଥା ଲାଭକରେ । ପ୍ରକୃତ ମୌନ ସାଧନାର ଆରମ୍ଭ ଏହିସ୍ଥାନରେ । ଚେଷ୍ଟାକରି ତ୍ୟାଗର ସାଧନା କରିବାର ପ୍ରୟୋଜନ ନାହିଁ । ଅନାବଶ୍ୟକ ଜିନିଷ ଅପେ ଅପେ ତ୍ୟାଗ ହୋଇଯିବ । ନିଜ ମଧ୍ୟରେ ସୁପ୍ତଶକ୍ତି ପୁନର୍ବାର ଜାଗି ଉଠିବ । ଏପରି ଭାବରେ ଜାଗ୍ରତ ଅବସ୍ଥାରେ କାର୍ଯ୍ୟ କରିପାରିଲେ ଦୁଃଖ ମନଉପରେ କୌଣସି ପ୍ରଭାବହିଁ ବିସ୍ତାର କରି ପାରିବ ନାହିଁ ।

ମୂକ ସାଧନାର ଦର୍ଶନହିଁ ହେଉଛି ପର୍ଯ୍ୟବେକ୍ଷଣ କ୍ରମାନ୍ୱୟ ଚିନ୍ତାର ପର୍ଯ୍ୟବେକ୍ଷଣ ଦ୍ୱାରାହିଁ ଚିନ୍ତାର ଲୋପ ହୁଏ । ସାଧନାର ଅଗ୍ରସର ସଙ୍ଗେ ସଙ୍ଗେ ସାଧକ ଅନାବଶ୍ୟକ ଚିନ୍ତାକୁ ମନଠାରୁ ଦୂରକୁ ଫିଙ୍ଗିଦିଏ । ଦିନକୁ ଦିନ ଅବଶ୍ୟକୀୟ ଚିନ୍ତାର ସଂଖ୍ୟା କମିଯାଏ । କେବଳ ପର୍ଯ୍ୟବେକ୍ଷଣ ସାହାଯ୍ୟରେହିଁ ଏହା ସମ୍ଭବ ହୁଏ । କୌଣସି ବିଶେଷ ଚେଷ୍ଟାର ପ୍ରୟୋଜନ ନାହିଁ । ଏହିପରି କରି ମଣିଷ ଜାଗ୍ରତ୍ ଜୀବନ ଯାପନ କରିପାରେ । ସାଧନା ଶେଷରେ ମନର ମଧ୍ୟ ଲୋପ ଘଟେ । ଅସ୍ତିତ୍ୱର ମଧ୍ୟ ଶେଷ ସେହି ସ୍ଥାନରେ । ଖୋଜିବା, ପାଇବା, ଦୁଃଖ, ସୁଖ, ଭଲ, ମନ୍ଦ ସମସ୍ତର ଅଦ୍ଭୁତ ସେତିକିବେଳେହିଁ ସମ୍ଭବ । ସକଳ ପ୍ରଚେଷ୍ଟାର ଚରମ ସମାପ୍ତି ଏହିସ୍ଥାନରେ । ଦୁଃଖ ମୋଚନର ଅଜ୍ଞାନ ପ୍ରଚେଷ୍ଟାରେ ଯେଉଁ ସନ୍ଧାନର ଆରମ୍ଭ, ସତ୍ୟର ଆବିଷ୍କାରହିଁ, ତାହାର ପରିସମାପ୍ତି ।

* * * *

## (୧୦)

ଶକ୍ତିନାଶ ଅଥବା ମନର ସଂହାର ପ୍ରଚେଷ୍ଟାର ଉତ୍ତରେ ଯେଉଁ ସାଧନାର ପ୍ରବର୍ତ୍ତନ, ସେ ସାଧନାରେ ସାଧକର ପ୍ରଥମ ପ୍ରୟୋଜନ ଅପରସୀମ ଧୈର୍ଯ୍ୟ ଏବଂ ଆତ୍ମବିଶ୍ୱାସ । ମୌନୀ ସାଧୁଙ୍କ ଜୀବନ ଏବଂ ପ୍ରଭାବ ମଧ୍ୟରେ ମଧ୍ୟ ଏହି ଆତ୍ମବିଶ୍ୱାସ ଏବଂ ଧୈର୍ଯ୍ୟ ପ୍ରତି ବିଶେଷ ଲକ୍ଷ୍ୟ ସର୍ବଦାହିଁ ଦେଖାଯାଏ । ତାଙ୍କ ନିଜ ଭାଷାରେ ।—

"ସିଂହପରି ସାହସ ଓ ବିକ୍ରମ ନେଇ ଆଗେଇ ଚାଲ । ଏହି ଦୁନିଆରେ ଯଦି ବଞ୍ଚି ରହିବାକୁ ହୁଏ ତେବେ ମହାନ୍ ହୋଇ ବଞ୍ଚିରହ । କୁକୁର, ବିଲେଇ ପରି ସାହସ ନେଇ ବଞ୍ଚିରହି ଲାଭନାହିଁ ଯାହା ଜଣେ ମଣିଷ କରିପାରିଛି, ତାହା ପ୍ରତ୍ୟେକ ମଣିଷ ମଧ୍ୟ କରିପାରେ ଯଦି ପ୍ରକୃତ ଆତ୍ମବିଶ୍ୱାସ ଥାଏ । ମୁଁ ଦୁର୍ବଳ, ମୁଁ ଶକ୍ତିହୀନ କହି ଲାଭନାହିଁ । କହ ମୋ ମଧ୍ୟରେ ଅନନ୍ତ ଶକ୍ତି ଅଛି । ମୋତେ କେହି ଜଣେ ସୀମାବଦ୍ଧ କରି ରଖି ପାରିବ ନାହିଁ ।"

ମାନସିକ ଦୁର୍ବଳତାକୁ କେବେହେଁ ସେ ପ୍ରଶ୍ରୟ ଦେଇ ନାହାନ୍ତି । କହିଛନ୍ତି, ତାହା ଏକ ବ୍ୟାଧି; ଘୃଣା କରିବାର ଜିନିଷ; ସହାନୁଭୂତିର ଜିନିଷ ନୁହେଁ । ସାଧନାର ପଥରେ, ସୁଖ ଓ ଦୁଃଖ ଜୟ ଓ ପରାଜୟ, କ୍ରମାନ୍ୱୟରେ ଆସିବ ଏବଂ ଯିବ । ସାଧକ କେବଳ ପର୍ଯ୍ୟବେକ୍ଷଣ କରିବ ନିଜକୁ । ପର୍ଯ୍ୟବେକ୍ଷଣ କରିବ ଏହି ସୁଖ ଓ ଦୁଃଖର ଯିବା ଆସିବାକୁ । ଏହି ଜୟ ଓ ପରାଜୟର ଆଗମନ ଏବଂ ପ୍ରତ୍ୟାଗମନକୁ ସମ୍ପୂର୍ଣ୍ଣ ନିରପେକ୍ଷ ଭାବରେ

ଅପଣାର ବାହାରେ ଦେଖିବାର ଚେଷ୍ଟା କରିବ । ଯେତେବେଳେ ଅମ୍ଭମାନଙ୍କର ଏହି କର୍ତ୍ତବ୍ୟ କାର୍ଯ୍ୟରୁ ଅମ୍ଭେମାନେ ବିମୁଖ ହୋଉଛୁ ସେତେବେଳେ ହୋଉଛି ଅମ୍ଭମାନଙ୍କର ପଦସ୍ଖଳନ । ମାନସିକ ଦୁର୍ବଳତା ଅମ୍ଭମାନଙ୍କର ଅଜ୍ଞାତସାରରେ ଅମ୍ଭମାନଙ୍କ ମନରେ ବସା ବାନ୍ଧୁଛି । କ୍ରମାନ୍ୱୟରେ ଅଭ୍ୟାସ କରି କରି ଆତ୍ମ-ବିଶ୍ୱାସ ବଢ଼ିଗଲେ । ମାନସିକ ସାମ୍ୟ ଲାଭ ହୁଏ । ଧୈର୍ଯ୍ୟହୀନ ହେଲେ ଅଗ୍ରଗତି କ୍ଷୀଣ ହୋଇଯାଏ । ନିଜ ଜୀବନ ଦେଇ ସେ ଧୈର୍ଯ୍ୟର ଚରମ ଦୃଷ୍ଟାନ୍ତ ମଣିଷ ନିକଟରେ ରଖି ଦେଇ ଯାଇ ଅଛନ୍ତି । ବିଂଶ ବର୍ଷ ବ୍ୟାପୀ ଧୈର୍ଯ୍ୟର ସାଧନାର ଏହି ନୀରବ ଜ୍ୱଳନ୍ତ ଦୃଷ୍ଟାନ୍ତ ଦୁର୍ବଳ ମନକୁ ଆପେ ଆପେ ଶକ୍ତି ଦାନ କରିବ ।



ମୌନସାଧକଙ୍କର

# ସତ୍ୟର ବାଣୀ

ଓ

# ବିଦାୟ ବାଣୀ

ଅନୁବାଦକ—ଶ୍ରୀ ଆନନ୍ଦ ଚନ୍ଦ୍ର ମହାନ୍ତି

## ସତ୍ୟର ବାଣୀ

ତା ୫ । ୧୨ । ୫୧ ରିଖ :—

ଆପଣମାନଙ୍କର ଯାହା କିଛି ପଚାରିବାକୁ ଥିବ ତା ଏ ତା ୩୧।୧୨।୫୧ ରିଖ ଯାଏ ପଠାଇବାର ମାତ୍ର କରନ୍ତୁ । ୧।୧।୫୨ ତାରିଖଠାରୁ କୌଣସି କଥା ମୁଁ ଶୁଣିବାକୁ ଚାହେଁ ନାହିଁ । ଦୟାକରି କ୍ଷମା କରିବେ । ମଙ୍ଗଳମୟ ଆପଣମାନଙ୍କର ମଙ୍ଗଳ କରନ୍ତୁ । ବେଶି ସମୟ ବାକି ନାହିଁ । ଅନ୍ୟ ଧନ ବର୍ଜ୍ଜନୀୟ । ଭକ୍ତିବ୍ୟ କରନ୍ତୁ ।

ତାଙ୍କ ଆଦେଶ—ଯାଏ ।

ତା ୨୮।୧୨।୫୧ ରିଖ ସକାଳ ପ୍ରାୟ ଘଣ୍ଟା

ଶେଷବାଣୀ—ବିଦାୟ ବାଣୀ ।

ପୃଥିବୀର ପ୍ରତ୍ୟେକ ମାନବହିଁ ସତ୍ୟର କେନ୍ଦ୍ରସ୍ଥଳ ହେଉ ଏବଂ ପ୍ରତ୍ୟେକ ଗୃହ ବା ସବୁହିଁ ସତ୍ୟର କେନ୍ଦ୍ରସ୍ଥଳ ହେଉ । ଏହା ମୋର ଜୀବନର ଉଦ୍ଦେଶ୍ୟ । ସେଥିପାଇଁ ସତ୍ୟାନୁସନ୍ଧି ମୋର ଜୀବନ ଉତ୍ସର୍ଗ କଲି ଏବଂ ମୋର ପୂର୍ଣ୍ଣ ଶକ୍ତି ଏହି ସତ୍ୟ ପ୍ରତିଷ୍ଠା କରିବା ନିମନ୍ତେ ଅର୍ପଣ କଲି । ମୁଁ ସତ୍ୟ ସାକ୍ଷୀ ରଖି ପ୍ରତିଜ୍ଞା ଭର ମାଲୁଅଛି ଯେ ମୋର ସତ୍ୟର ବଳ ବୃଦ୍ଧି ହୋଇ ପାରିବ ନାହିଁ । ମୁଁ ସେଥିପାଇଁ ଚିରଦିନ ଦାୟୀ ରହିବ । ସତ୍ୟର ଜୟ ହେଉ । ବିଦାୟ........

ଆପଣମାନେ ସତ୍ୟ ଘୋଷଣା କରନ୍ତୁ ।

ମୁଁ ସତ୍ୟ କାଳରେ ଆସିବି ।

ହେ ମାନବ ମଣ୍ଡଳୀ ! ଆପଣମାନେ ଦୟାକରି ଆଜ୍ଞା ମୋତେ ବିଦାୟ ଦିଅନ୍ତୁ ।ଇତି

ବିଦାୟ........

"ଜୟ ସତ୍ୟର"

"ସତ୍ୟର ଜୟ"

"ସତ୍ୟ"

ସତ୍ୟ ହିଁ ମୋର ଗତି ବା ପ୍ରତିମୂର୍ତ୍ତି ।

ସତ୍ୟମ୍ ସ୍ୱରୂପମ୍ ସୁନ୍ଦରମ୍ ।

ସତ୍ୟମେବ ଜୟତେ ।

[illegible] ।

ତା ୩୦।୧୨।୫୧ରିଖ—ଏହି ବିଦାୟ ବାଣୀ ନରେନ ଓ ଧିରେନ ସ୍ୱରଙ୍କ ମାରଫତରେ ଅର୍ପଣ କଲି ।

ଫକିର ।

## ସତ୍ୟମ୍ ।

୨।୧।୫୨—ସତ୍ୟ ବୋଲ, ସତ୍ୟ ବୋଲ, ବୋଲ ସତ୍ୟ ସତ୍ୟ ଗୁରୁ, ଗୁରୁ ସତ୍ୟ, ସତ୍ୟ ଗୁରୁ ନାରାୟଣ, ସତ୍ୟ ବ୍ରହ୍ମମୟ, ସତ୍ୟ ପ୍ରାଣ ହେ, ସତ୍ୟ ମମ ଜୀବନ, ମନ ସତ୍ୟ, ଜ୍ଞାନ ସତ୍ୟ, ପ୍ରାଣ ସତ୍ୟ, ବୁଦ୍ଧି ସତ୍ୟ, ବୋଧ ସତ୍ୟ, ଜଗତ ସତ୍ୟ, ସତ୍ୟରେ ଜଗତ୍, ସତ୍ୟ ଯନ୍ତ୍ର, ସତ୍ୟହିଁ ଯନ୍ତ୍ରୀ, ମୁଁ ସତ୍ୟ ବା ମୁଁ ସତ୍ୟ ସ୍ୱରୂପ, ମୋର ଯାହା କିଛି ଅଛି ତାହା ସମସ୍ତହିଁ ଅସତ୍ୟ ବା ନଶ୍ୱର । ଜୟ ସତ୍ୟ·········

ସତ୍ୟହିଁ କେବଳମ୍ । ସତ୍ୟଂ ସ୍ୱରୂପଂ ସୁନ୍ଦରଂ ।

ସତ୍ୟ

---

୧୩ । ୧ । ୫୨ :—

ଆପଣମାନଙ୍କର ବିବେକ ଅନୁସାରେ ଆପଣମାନଙ୍କର କର୍ତ୍ତବ୍ୟ କରନ୍ତୁ ।

ମୋର ସତ୍ୟହିଁ ପୃଥିବୀ ଉପରେ ଯଥା ସମୟରେ କାର୍ଯ୍ୟ କରାଇବ । ଏଥିରେ ମାତ୍ର ସନ୍ଦେହ ନାହିଁ ।

ମୋର ସତ୍ୟ କହୁଛି ।

ତା ୧୩।୧।୫୨

ସତ୍ୟ'ର ଶେଷ ବାଣୀ ।

ଭବିଷ୍ୟତ ପାଇଁ ମୁଖ ବନ୍ଦ । ଦୟାକରି କ୍ଷମା କରିବେ ।

ମୋର ଇଚ୍ଛା—

ପ୍ରକାଶ ୧୫।୧।୫୨ ସକାଳ ପ୍ରାୟ ୭-୩୦ ମିନିଟ ।

ଏହି ଶେଷ ବାଣୀ ସତ୍ୟର ଭକ୍ତ ଆନନ୍ଦ ଚନ୍ଦ୍ର ମହାନ୍ତି ଓ ତାଙ୍କ ସ୍ତ୍ରୀଙ୍କ ମାରଫତ ଅର୍ପଣ କଲି ।

ସତ୍ୟର ଭିକାରୀ ୧୫।୧।୫୨

---

ତା ୧୩।୧।୪୨—

ହେ ମାନବ ମଣ୍ଡଳୀ,

ମୁଁ ମାନବ । ମୋର ମାନବ ମୂର୍ତ୍ତିକୁ ଏବଂ ମୋର ଲେଖାକୁ ଆପଣମାନେ ପଦଦଳିତ କରିପାରନ୍ତି ବା କରନ୍ତୁ ସେଥିପାଇଁ ମୁଁ ଆନନ୍ଦିତ ହେଉଛି ଓ ହେବି । ମୋର ଏକବିନ୍ଦୁ ଦୁଃଖ ମନରେ ହେଉ ନାହିଁ ଓ ହେବ ନାହିଁ ମଧ୍ୟ । ମୁଁ ସତ୍ୟ ପ୍ରତିଷ୍ଠା କରିବା ପାଇଁ ଜନ୍ମ ହୋଇଛି । ସେହେତୁ ସତ୍ୟ ପାଇଁ ଏତେ ବର୍ଷ ଧରି ଚେଷ୍ଟା କରି ଆସିଛି ଏବଂ ସେହି ସତ୍ୟ ନିମିତ୍ତ ଜୀବନ ଉତ୍ସର୍ଗ କଲି । ଏହି ଯେ "ଚିରସତ୍ୟ" ତାହା ଲୋପ ହେବ ନାହିଁ । ହେ ମାନବ ମଣ୍ଡଳୀ—ଏହି ମୋର ଚିର ସତ୍ୟ ନିକଟକୁ ଆପଣ ମାନଙ୍କୁ ଆସିବାକୁହିଁ ହେବ । ସେହେତୁ ଆସନ୍ତୁ ।

"ଚିର ସତ୍ୟ, ଧ୍ରୁବ ସତ୍ୟ"

ଚିର ଫକୀର

ଆପଣମାନେ ପଦଦଳିତ କଲେ ମଧ୍ୟ ମୁଁ ଚିରଧନ ଦାୟୀ ରହିବି । କାରଣ ପୃଥିବୀରେ ସମସ୍ତେ ମୋହରି ପରି ମାନବ । ମୋର ମାନବ ମୂର୍ତ୍ତି ମୁଁ ତ୍ୟାଗ କରି ପାରିବି ନାହିଁ । ମୋର ମାନବ ମୂର୍ତ୍ତି ପାଇଁ ମୁଁ ଚିର ଦାୟୀ ରହିବହିଁ ।

"ସତ୍ୟଂ ଦେହି, ସତ୍ୟଂ ଦେହି, ସତ୍ୟଂ ଦେହି ।

ସତ୍ୟର ଭିକାରୀ ।

---

୧୪ । ୧ । ୫୨

ସତ୍ୟର ଭକ୍ତ ନରେନ ଓ ଧିରେନ ସୁରଙ୍କ ମାରଫତ ସ୍ଥୂଳ ଓ ସୂକ୍ଷ୍ମ ଅର୍ପଣ କରାହେଲା ।

ସତ୍ୟର ଭିକାରୀ

17. 1. 52 at about 4 P. M.

Oh my lovely devotees of truth,

I am the son of truth and rich and you all are also the sons of truth and rich. So why doyou not hear the sayings of truth and why do you not act on the universe according to the saying of truth. Please tell me the truth. The truth shall raise you all up and up in the long run and also in the next births. Oh my lovely one and all, please come forward as a lion and tiger but not as a dog.

My truth says

---

ତା ୧୭ । ୧ । ୫୨ ଅପରାହ୍ନ ପ୍ରାୟ ଘ ୪ ଣ୍ଟା—

ହେ ମୋର ସତ୍ୟର ଶ୍ରଦ୍ଧେୟ ଭକ୍ତଗଣ,

ମୁଁ ସତ୍ୟର ସନ୍ତାନ ଏବଂ ଧର୍ମ ଓ ଆପଣମାନେ ମଧ୍ୟ ସମସ୍ତେ ସତ୍ୟର ସନ୍ତାନ ଓ ଧର୍ମ । ସୁତରାଂ ଆପଣମାନେ ସତ୍ୟର ଭାଷଣ ନ ଶୁଣୁଛନ୍ତି କାହିଁକି ଏବଂ ସତ୍ୟର ଭାଷଣ ଅନୁଯାୟୀ ପୃଥିବୀରେ କାର୍ଯ୍ୟ ନ କରୁଛନ୍ତି କାହିଁକି ? ଅନୁଗ୍ରହ କରି ମୋତେ ସତ୍ୟ କହନ୍ତୁ । ସର୍ବଶେଷରେ ଜନ୍ମାନ୍ତରେ ମଧ୍ୟ ସତ୍ୟ ଆପଣମାନଙ୍କୁ ସମସ୍ତଙ୍କୁ ଉର୍ଦ୍ଧ୍ୱଗାମି କରିଦେବ ।

ହେ ମୋର ଶ୍ରଦ୍ଧେୟ ପ୍ରତ୍ୟେକ ଓ ସମସ୍ତ ଭକ୍ତଗଣ, ଅନୁଗ୍ରହ କରି ଶ୍ୱାନ ସଦୃଶ ନୁହେଁ, ସିଂହ ଓ ବ୍ୟାଘ୍ର ପରି ଅଗ୍ରସର ହୁଅନ୍ତୁ ।

ମୋର ସତ୍ୟ କହୁଛି ।

---

ତା ୧୭ । ୧ । ୫୨ ।—

ନାରାୟଣ ସ୍ୱର ଭ୍ରାତୃଦ୍ୱୟ ! ହେ ନାରାୟଣ ! ଆପଣମାନେ ଭାରତରେ ବା ବଙ୍ଗଳାରେ ଗୋଟିଏ ସତ୍ୟର ସଂସାର । ଆଉ ମଧ୍ୟ ବିଶେଷ ଧର୍ମ ସଂସାର । ସତ୍ୟ ପ୍ରବୃତ୍ତିରେ ଆପଣମାନଙ୍କ ସଂସାରରେ ମୁଁ ଦେଖିଆସିଛି । ଅତଏବ ମୋ ମତରେ ଆପଣ-ମାନଙ୍କର କର୍ତ୍ତବ୍ୟ ଏହା ଯେ ଆପଣମାନେ ଦୟାକରି ଭାରତରେ ବିଶେଷତଃ ସମଗ୍ର ବଙ୍ଗଳାରେ ଏହା ମୋର ବିଶେଷ ବାଣୀଗୁଡ଼ିକ ହ୍ୟାଣ୍ଡବିଲ୍ କରି ବିତରଣ କରିବା କର୍ତ୍ତବ୍ୟ । ଆଉ ପ୍ରତ୍ୟେକ ପ୍ରଧାନ ଦେଶର ଖବରକାଗଜ ଗୁଡ଼ିକରେ ଦୈନିକ ବାହାର

ହୋଇପାରେ ଏହାର ବ୍ୟବସ୍ଥା କରିବା କର୍ତ୍ତବ୍ୟ । କାରଣ ଆପଣ-ମାନଙ୍କ ପରି ଅନ୍ୟାନ୍ୟ ସବୁ ସଂସାର ହୋଇ ବା ହେବନ୍ତି । ତାହାହେଲେ ଜଗତର ଉପକାର ଅବଶ୍ୟ ହେବ । ଝଙ୍କାର ସବୁ ବ୍ୟବହାର କରନ୍ତୁ ।

ଆପଣମାନଙ୍କର ସତ୍ୟର ଫକିର

---

ତା । ୧୯ । ୧ । ୫୨ ରିଖ ପ୍ରାପ୍ତ ଘଟ୍ୟଣ୍ଟା ।

ହେ ମାନବ ମଣ୍ଡଳୀ,

ମୃତ୍ୟୁ କ'ଣ ? ମୃତ୍ୟୁ ଏକପ୍ରକାର "ସ୍ନାନ" । ଆମ୍ଭେମାନେ ପ୍ରତିଦିନ ସ୍ନାନ କରିଥାଉଁ । ଅପବିତ୍ର ହେଲେ ମଧ୍ୟ ସ୍ନାନ କରିଥାଉଁ । ଦେହ ରକ୍ଷା ନିମିତ୍ତ ଓ ମଇଳା ଓ ଅପବିତ୍ର ପାଇଁ ମାନ୍ଦା ମୁଁ ଦେହଧାରୀ ଜୀବ । ଦେହଧାରୀ ଜୀବ ହେଲେ ଅପବିତ୍ର ଓ ମଇଳା ଯୁକ୍ତ ହେବା ସ୍ୱାଭାବିକ । ସୁତରାଂ ମୋର ସ୍ନାନ କରିବା କର୍ତ୍ତବ୍ୟ, ସେଥି ନିମିତ୍ତ ମୁଁ ଥିକଏ ସ୍ନାନମାନ କରିବି । ସ୍ନାନ କଲେ ଆପଣମାନଙ୍କର ମନପ୍ରାଣ ଆନନ୍ଦିତ ହୁଏ ତାହାତ ଜାଣନ୍ତି । ସେଥିପାଇଁ ମୋର ସ୍ନାନରେ ମଧ୍ୟ ମୁଁ ଆନନ୍ଦିତ ହେଉଛି । ଆପଣମାନେ ମଧ୍ୟ ସେହିପରି ଆନନ୍ଦିତ ହୁଅନ୍ତୁ । ଏହିପରି ସ୍ନାନ ଆପଣମାନଙ୍କୁ ମଧ୍ୟ କରିବାକୁ ହେବନ୍ତି । ଅତଏବ ସତ୍ୟର ସ୍ନାନ କରିବାହିଁ ଆନନ୍ଦ········· ।

ସତ୍ୟର ସ୍ନାନ ।

---

ତା ୧୯।୧।୫୨ ପ୍ରାୟ ୫ଟା —

ରାମକୃଷ୍ଣ ମିଶନରେ ପ୍ରବେଶ କରିବାର ଇଚ୍ଛା ଥିଲା ସେ ଆମେରିକା ଓ ଲଣ୍ଡନ ଯିବି, ସେଥିନିମିତ୍ତ ସ୍ୱାମୀ ଶିବାନନ୍ଦଙ୍କ ସହିତ କାଶିରେ ଦେଖାକଲି, ସେତେବେଳେ ତାଙ୍କର ଦେହ ଅସୁସ୍ଥ ଥିଲା । ଅଧିକ ଯତ୍ନ କଲେ ସତ୍ୟ କିନ୍ତୁ ମନ୍ତ୍ରଁତେତେ ମାନିଲେ ନାହିଁ । ଭଗବାନଙ୍କର ଦୟାରୁ ଅନ୍ୟତ୍ର ଯିବାକୁ ହେଲା, ପରେ ଭୁବନେଶ୍ୱର ଓ ପୁରୀର ଆଶ୍ରମକୁ ଗଲି । ସେମାନେ ମଧ୍ୟ ବେଶ ପ୍ରସାଦ ଦେଲେ ଓ ଭଲ ଯତ୍ନ ଓ ବ୍ୟବହାର କଲେ । ପୁଣି ୧୯୪୩ ମସିହାଠାରୁ ସ୍ୱାମୀ ନିଖିଳାନନ୍ଦ ଓ ଅନ୍ୟାନ୍ୟ ସନ୍ୟାସୀମାନଙ୍କ କଥା ବରାବର ପି: ସି: ମିତ୍ର ରିପୋର୍ଟ ଦିଅନ୍ତି । ଆମେରିକା ଲଣ୍ଡନ ଖବର ପ୍ରାୟ ଦିଅନ୍ତି ।

ରାମକୃଷ୍ଣ ଦେବହିଁ ମୋର ଜୀବନର ପଥପ୍ରଦର୍ଶକ । ଅତଏବ ମିଶନର କର୍ତ୍ତବ୍ୟ "ଏହି ବିଦାୟବାଣୀ ଓ ଅନ୍ୟାନ୍ୟ ବାଣୀ ଗୁଡ଼ିକ ଜଗତରେ ପ୍ରକାଶ କରିବା ।" ରାମକୃଷ୍ଣ ଦେବଙ୍କର ସତ୍ୟହିଁ ପ୍ରଚାର ହେବ । ସତ୍ୟର ମିଶନ ସତ୍ୟପ୍ରକାଶ ନ କଲେ ସତ୍ୟର ଅପଲାପ କରିବେ । ରାମକୃଷ୍ଣ ଦେବଙ୍କର ଇଚ୍ଛା ହେଲେ, ମୋର ବିଶ୍ୱାସ ତାଙ୍କର ମିଶନ ମଧ୍ୟ ଦୟାକରି ସତ୍ୟବାଣୀ ପ୍ରକାଶ କରିବେ । "ଠାକୁରଙ୍କର ଇଚ୍ଛା" ପୂର୍ଣ୍ଣ ହେଉ ।

ଭୁବନେଶ୍ୱରର ବଲାଇ ମହାରାଜାଙ୍କ ସଙ୍ଗେ ଅନେକ କଥାବାର୍ତ୍ତା ମଧ୍ୟ ସୁରେଶଚନ୍ଦ୍ର ବର୍ଦ୍ଧନ ପ୍ରଫେସରଙ୍କ ଘରେ ବସି ହୋଇଥିଲା । ସେ ବିଶେଷ ଉଦାର ପ୍ରାଣ ଓ ଭଲ ଲୋକ ବୋଲି ବିଶ୍ୱାସ ହେଲା । "ଅନେକ ବର୍ଷର କଥା" ସେ ହୁଏତ ଭୁଲି ଯାଇ ଥିବେ । ଅଥବା ଭୁଲି ଯାଇ ନ ପାରନ୍ତି । ପ୍ରାୟ ୨୩।୨୦

ବର୍ଷର କଥା । ଆଜି ମୋର ଆମେରିକା ଓ ଲଣ୍ଡନ ଯିବା ହେଲା ନାହିଁ ସତ କିନ୍ତୁ ମୋର ନାମ ସବୁ ଦେଶକୁ ପି, ସି: ଦିନ ନେଇଛି । ପୁଣି ଆମେରିକା, ଲଣ୍ଡନର ବହୁତ ଠଙ୍କା ପେଟକୁ ଯାଇଛି, ସନ୍ଦେହ ନାହିଁ । ଭାବନାର ସତ୍ୟତା ନଷ୍ଟ ଏକ ପ୍ରକାର ହୋଇ ନାହିଁ । ପରମହଂସଦେବ ମଧ୍ୟ ଫକିର ଥିଲେ, ହେଲେ ସତ୍ୟର ଫକୀର ।

ସତ୍ୟର ଫକିର—ସତ୍ୟର ଭିକାରୀ ।

———

Oh my lovely human Society,

Please see:—

What is "I"? "I" is confined within my body, again the body is confined with the senses and organs, elements and atoms etc. I the self, the Truth is never to be tainted by the actions of senses and organs. Suppose the senses and the organs make any wrong deed by the help of mind. Then and there they will suffer accordingly. What is that to 'I' ? Because 'I' is the master of body as 'I' will leave the body in time. It is called 'I' the truth. Nothing can stand without 'I'. It is the very 'I' the Truth.

ହେ ମୋର ପ୍ରିୟ ମାନବମଣ୍ଡଳୀ, ଅନୁଗ୍ରହ କରି ଦେଖନ୍ତୁ—

"ମୁଁ" କିଏ ? "ମୁଁ" ମୋର ଶରୀର ମଧ୍ୟରେ ଆବଦ୍ଧ ପୁଣି ଶରୀର ଇନ୍ଦ୍ରିୟ, ଉପାଦାନ ଓ ପରମାଣୁ ଆଦି ସହିତ

ଅବଦ୍ଧ । ମୁଁ, ପରମାତ୍ମା ବା ସତ୍ୟ, ରିପୁ ଓ ଇନ୍ଦ୍ରିୟମାନଙ୍କ କାର୍ଯ୍ୟ ଦ୍ୱାରା କଦାପି କଳୁଷିତ ହେବାର ନୁହେଁ । ମନେକର ରିପୁ ଓ ଇନ୍ଦ୍ରିୟମାନେ ମନର ସାହାଚର୍ଯ୍ୟରେ କୌଣସି ଭୁଲ କାର୍ଯ୍ୟ କଲେ; ତତ୍ ଷଡ଼ଙ୍ଗ ସଙ୍ଗେ ସେମାନେ ତଦନୁଯାୟୀ ପରିଣାମ ଭୋଗ କରିବେ । "ମୁଁ"କୁ ସେ ସବୁ କଅଣ ? କାରଣ "ମୁଁ" ଶରୀରର ପ୍ରଭୁ, ଯେ ହେତୁ "ମୁଁ" ଶରୀରକୁ ଯଥା ସମୟରେ ଛାଡ଼ିଯିବ । ଏହାକୁ "ମୁଁ" ବା ସତ୍ୟ କୁହାଯାଏ । "ମୁଁ" ଛଡ଼ା କିଛିମାତ୍ର ତିଷ୍ଠି ପାରେ ନାହିଁ । ଏହାହିଁ "ମୁଁ" ବା ସତ୍ୟ ।

[illegible]

---

ତା ୧୯ । ୧ । ୫୨ [illegible]

"ମୁଁ ଯାଉଛି" ଶୁଣିଲି ଏବଂ ହଠାତ୍ ନିଦ୍ରାଭଙ୍ଗ ହେଲା । ମନରେ ଆନନ୍ଦ ହେଲା; ଏତେ ଆନନ୍ଦ ହେଲା ଯେ ଏକ ମହାନନ୍ଦରେ ପରିଣତ ହେଲା । ତେବେ କାଲି ରାତିରେ ରାମକୃଷ୍ଣ ଦେବଙ୍କ ସଙ୍ଗରେ ମାଙ୍କ ସଙ୍ଗରେ ଓ ଗୁରୁଦେବଙ୍କ ସଙ୍ଗରେ ଅନେକ କଥାବାର୍ତ୍ତା ହୋଇଥିଲା । କାରଣ ପ୍ରଥମରେ ଦାୟୀ ଗୁରୁଦେବ; ଦ୍ୱିତୀୟ ଦାୟୀ ରାମକୃଷ୍ଣଦେବ ଓ ମା ବ୍ରହ୍ମମୟୀ, ସେହି ଯୋଗୁଁ କହୁଥିଲି ତୁମ୍ଭେମାନେ ଯେତେବେଳେ ମୋତେ ଏହିପରି ଅବସ୍ଥାରେ ପକାଇଲ ବର୍ତ୍ତମାନ ତୁମ୍ଭେମାନେ ବୁଝ ଏବଂ ଯଥା ସମୟରେ ତୁମ୍ଭମାନଙ୍କର ଆଦେଶ ପାଳନ କର ତୁମ୍ଭ-ମାନଙ୍କର ସତ୍ୟକୁ ଜଗତରେ ପ୍ରତିଷ୍ଠା କର । ନଚେତ୍ବା

ତୁମ୍ଭମାନଙ୍କର ଏବଂ ମୋର ସତ୍ୟର ଅପଳାପ ହେବ । "ତୁମ୍ଭମାନଙ୍କର ଯାହା ଇଚ୍ଛା ଚିନ୍ତିକର ।" ପରେ ଟିକିଏ ନିଦ୍ରା ହେଲା ପରେ ଭକ୍ତ ସମୟରେ ଏହି କଥା ଶୁଣିବାକୁ ପାଇଲି ଓ ଉଠିଲି । "ଦୟା" ଆନନ୍ଦରେ କାନ୍ଦ ଆସିଲା କେବଳ ସକାଳଠାରୁ । ରାମକୃଷ୍ଣ ଦେବହିଁ ପ୍ରଥମରେ ମୋର ଜୀବନ ପରିବର୍ତ୍ତନ କରନ୍ତି ୧୯୩୨ ମସିହା ଅଗଷ୍ଟ ତା ୨୫ରିଖ ବୁଧବାର । ମା'ଙ୍କର ଓ ରାମକୃଷ୍ଣ ଦେବଙ୍କର ଦୟାରୁହିଁ ଏହି ସତ୍ୟ ପ୍ରକାଶ ହେଉଛି ଓ ହେବ ମଧ୍ୟ । ମା'ଙ୍କର ଦୟାରୁ ରାମକୃଷ୍ଣ ଦେବ ରୋଗୀ ହୋଇ ଦେହ ଛାଡ଼ିଥିଲେ । ବର୍ତ୍ତମାନ ମାଙ୍କର ଦୟାରୁ ସେହିହିଁ ନିରୋଗୀ ଭାବେ ଯିବେ । ତାହାଙ୍କରହିଁ ସତ୍ୟ ତଳେମାଏ ସନ୍ଦେହ ନାହିଁ । ସେଥି ନିମିତ୍ତ ମହାନନ୍ଦର ଦିନ । ଆମ୍ଭେମାନେ ମୁଖ ମଧୁର କରିବା । ଅମ୍ଭମାନଙ୍କର ଘରେ ମଧ୍ୟ ଆନନ୍ଦ ଉତ୍ସବ ହେଉ । ପୁଣି ମୋର ଖାଇବା ମଧ୍ୟ ଆନନ୍ଦ ଘରେହିଁ ହେବ । ସେଥି ନିମିତ୍ତ ଘରେ ସମସ୍ତେ ମୁଖ-ମଧୁର କରିବାର ବ୍ୟବସ୍ଥା କରନ୍ତୁ, ଆଜ ମଧ୍ୟ ଏଠାକୁ କିଛି ଆଣିବେ । ଏଠାରୁ ପ୍ରସାଦ କିଛି ନେଇ ମିଶାଇ ସମସ୍ତେ ଗ୍ରହଣ କରିବେ । ଶୀଘ୍ର ଚାଲିଯାଇ ବ୍ୟବସ୍ଥା କରନ୍ତୁ ।

— — — —

୨୧ । ୧ । ୫୨ ସକାଳ ପ୍ରାୟ ୫ଟା:—

ପୂର୍ବକାଳୀନ ଚିରନିତ୍ୟ ସତ୍ୟ ସନାତନଧର୍ମର ଅନୁଷ୍ଠାନ ପ୍ରତିଷ୍ଠା ଜୟ ଚିରନିତ୍ୟ ସତ୍ୟ ସନାତନ ଧର୍ମର ଜୟ ବା·········· ଜୟ ସତ୍ୟ ସନାତନଧର୍ମର ଜୟ··········

ଦେହ ଛାଡ଼ିବାପରେ ଏହି ଧ୍ୱନି ମାଏ କରିବ ।

୨୧ । ୧ । ୫୨ ପ୍ରାୟ ୭ଟା ।—

ନରେନ ଓ ଧୃରେନ ସୁର,

ଆପଣମାନଙ୍କୁ ଯେଉଁ ଗୋପନ ଲେଖା ଦେଖାଇବାକୁ ଇଚ୍ଛା କରି ନାହିଁ ଓ ଦେହ ଛାଡ଼ିବା ପରେ ଖୋଜିବାକୁ କହିଥିଲି, ତାହା ପୋଡ଼ା ହେଲା । ପ୍ରକାଶ ହେବ ନାହିଁ ଓ ହେବା ମଧ ଠିକ ନୁହେଁ । ତେବେ ଗୋପନ ଥିଲା ଏହି ନିର୍ଦ୍ଦିଷ୍ଟ ମାସ, ଦିନ, ସମୟ ଓ କେତେ ଦିନ ମଧ୍ୟରେ ଦେହ ଛାଡ଼ିବାକୁ ହେବ, ତାହାହିଁ ସିଦ୍ଧାନ୍ତ କରି ଲେଖା ହୋଇଥିଲା, ତାହା ମୋର ନିଜର ଶାନ୍ତି ନିମିତ୍ତ । ମୁହିଁ ତ ଦେଖିବି ଓ ଜାଣିବି ଏବଂ ଯଥା ସମୟ ମୁଁ ବିଦାୟ ହେଲେ ଶାନ୍ତି ପାଇବି ଓ ଜଗତ ମଧ ଶାନ୍ତି ପାଇବ ଓ ଦିନ ଆସିବ ଶାନ୍ତି ହେବହିଁ ହେବ । ତାହା ସାଧାରଣଙ୍କୁ ଜଣାଇଲି ନାହିଁ, ସେହେତୁ ପୋଡ଼ା ହେଲା ।

No record to me at all

ସତ୍ୟ କହୁଛି ।

21. 1. 52 About 6½ at night.

Oh my lovely human society,

My duty is over so kindly let me take complete rest for my lovely "Truth" and let me take leave from you all and from the lovely universe, the great nature, the lovely mother, to my lovely truth, the almighty father. It is last and ever last pray to my lovely, the ever lovely Human society.

My truth says

୨୧ । ୧ । ୫୨ ରାତ୍ର ପ୍ରାୟ ୭ଘଣ୍ଟା

ହେ ମୋର ଶ୍ରଦ୍ଧେୟ ମାନବ ମଣ୍ଡଳୀ,

ମୋର କର୍ତ୍ତବ୍ୟ ଶେଷ ସୁତରାଂ ଅନୁଗ୍ରହ କର ମୋର ପ୍ରିୟ "ସତ୍ୟ" ନିମିତ୍ତ ମୋତେ ପୂର୍ଣ୍ଣ ଅବସର ଦିଅନ୍ତୁ ଏବଂ ଆପଣ-ମାନଙ୍କ ସମସ୍ତଙ୍କଠାରୁ ଓ ପ୍ରିୟ ଜଗତ, ମହାନ୍ ପ୍ରକୃତ, ଶ୍ରଦ୍ଧାସ୍ପଦା ମା ଠାରୁ ଛୁଟି ନେବାକୁ ଦିଅନ୍ତୁ, ସେହି ସର୍ବ ଶକ୍ତିମାନ ପିତା ମୋର ପ୍ରେମର ସତ୍ୟ ନିକଟକୁ । ଏହି ହେଉଛି ମୋର ପ୍ରିୟ ଚିରପ୍ରିୟ ମାନବ ମଣ୍ଡଳୀକୁ ଶେଷ ସର୍ବଶେଷ ପ୍ରାର୍ଥନା ।

ମୋର ସତ୍ୟ କହୁଛି ।

**21. 1. 52 at night About 7:—**

**Oh my Lovely Human Society.**

**I am ever, ever ready to help you all for truth. It is my duty, the ever duty by his and My will in the universe.**

**My truth says**

**I left my property and all for a direct and practical God, the truth. By His will my in tention is over and may fulfilled and I am gladly and heartly going to leave my lovely body.**

**By His and my will**

**My final truth says.**

୨୧ । ୧ । ୫୨ ରାତ୍ରି ପ୍ରାୟ ୭ଟା

ହେ ମୋର ପ୍ରିୟ ମନୁଷ୍ୟ ସମାଜ, ମୁଁ ସତ୍ୟ ନିମିତ୍ତ ଆପଣମାନଙ୍କ ସମସ୍ତଙ୍କ ସାହାଯ୍ୟ କରିବାକୁ ସର୍ବଦା ପ୍ରସ୍ତୁତ ।

ଭଗବାନ ଏବଂ ମୋର ଇଚ୍ଛାରୁ ଜଗତରେ ଏହା ମୋର କର୍ତ୍ତବ୍ୟ, ସର୍ବଦା କର୍ତ୍ତବ୍ୟ ।

ମୋର ସତ୍ୟ କହୁଛି ।

ସରଳ ଓ କାର୍ଯ୍ୟୋପ ଯୋଗୀ ଭଗବାନ ବା ସତ୍ୟର ସନ୍ଧାନରେ ମୁଁ ମୋର ସମ୍ପତ୍ତି ଓ ସମସ୍ତ ପଦାର୍ଥ ତ୍ୟାଗ କରିଥିଲି । ସେହି ଭଗବାନଙ୍କର ଇଚ୍ଛାରୁ ମୋର ଉଦ୍ଦେଶ୍ୟ ପୂରଣ ହୋଇଛି । ମୁଁ ଆନନ୍ଦ ଚିତ୍ତରେ ଓ ସୁସ୍ଥଭାବେ ମୋର ପ୍ରିୟ ଶରୀରକୁ ଛାଡ଼ିବାକୁ ଯାଉଛି ସେହି ଭଗବାନ ଓ ମୋର ଇଚ୍ଛାରୁ ।

ମୋର ଶେଷ ସତ୍ୟ କହୁଛି ।

21. 1. 52 at night about 7¼

My duty is over.
Please excuse me.
Do not expect more.
It is enough for truth.
Do your duty silently.
I am free to do my duty.
My will or truth says.

୨୧।୧।୫୨ ପ୍ରାୟ ୭୳ଟା ରାତ୍ର ।

ମୋର କର୍ତ୍ତବ୍ୟ ଶେଷ ହେଲା ।

ଅଉ କିଛି ଦୟା କରି ଆଶା କରନ୍ତୁ ନାହିଁ ।
କ୍ଷମା କରିବେ । କର୍ତ୍ତବ୍ୟ ନୀରବେ କରନ୍ତୁ ।
ମୁଁ ସ୍ୱାଧୀନ ମୋର କର୍ତ୍ତବ୍ୟ କରିବେ ।

ମୋର ଇଚ୍ଛା ବା ସତ୍ୟ କହୁଛି ।

21. 1. 52 at night at about $7\frac{1}{2}$

Let me think of you and I must do accordingly. But you do not give me any time to think of you, you, your self think of you according to your nature and habit. What shonld I do ?

Please say.

It is the highest and leest critical problem of human in nature.

ମୋତେ ଆପଣଙ୍କ ବିଷୟ ଚିନ୍ତା କରିବାକୁ ଦିଅନ୍ତୁ ଏବଂ ମୁଁ ଅବଶ୍ୟ ତଦନୁଯାୟୀ କରିବି, କିନ୍ତୁ ଆପଣଙ୍କ ସମ୍ବନ୍ଧେ ଭାବିବାକୁ ଆପଣ ମୋତେ କୌଣସି ସମୟ ଦେଉ ନାହାନ୍ତି । ଆପଣ ଆପଣଙ୍କର ପ୍ରକୃତି ଓ ଅଭ୍ୟାସ ମତେ ନିଜ କଥା ନିଜେ ଚିନ୍ତା କରୁଛନ୍ତି । ମୁଁ କଅଣ କରିବି ? ଅନୁଗ୍ରହ କରି କହନ୍ତୁ ।

ପ୍ରକୃତିରେ ମାନବର ଏହା ସର୍ବୋଚ୍ଚ ଓ ସର୍ବୋତ୍କୃଷ୍ଟ ବିଷମ ସମସ୍ୟା ।

I am always ready to help you all. It is my duty by His and My will in the universe.

My truth say

ମୁଁ ଆପଣମାନଙ୍କୁ ସମସ୍ତଙ୍କୁ ସାହାଯ୍ୟ କରିବାକୁ ସର୍ବଦା ପ୍ରସ୍ତୁତ । ଭଗବାନ ଏବଂ ମୋର ଇଚ୍ଛାନୁ ଜଗତରେ ଏହା ମୋର କର୍ତ୍ତବ୍ୟ ।

ମୋର ସତ୍ୟ କହୁଛି ।

ହେ ମାତୃଦେବୀଗଣ,

ଆପଣମାନେ ସତ୍ୟ ନିମିତ୍ତ ଅନୁପ୍ରାଣିତ ହୋଇ ଅସିଛନ୍ତି । (ଅପଣମାନେ) ଦୟା କରି ସତ୍ୟ ପଥରେ ଅନୁପ୍ରାଣିତ ହୁଅନ୍ତୁ । ଏହା ଅପଣମାନଙ୍କ ନିକଟରେ ମୋର ଭିକ୍ଷାମାନ । ଯେପରି ଆପଣମାନେ ସତ୍ୟର ସୁସନ୍ତାନ ସନ୍ତତ ଜଗତରେ ଦେଇ ନିରାପଦରେ ରହନ୍ତୁ । ଏହାହିଁ ମୋର ମାତୃ ଦେବୀମାନଙ୍କ ନିକଟରେ ପ୍ରାର୍ଥନା ।

ଆପଣମାନଙ୍କର ସତ୍ୟର ଭିଖାରୀ—ସନ୍ତାନ ।

୨୭ । ୯ । ୬୨ ସକାଳ ପ୍ରାୟ ଘ ୫୧ ଣ୍ଟା

ହେ ମୋର ପ୍ରିୟ ମାନବ ମଣ୍ଡଳୀ,

ମୁଁ ମନୁଷ୍ୟ, ମୋର ମନୁଷ୍ୟ ମୂର୍ତ୍ତିର ସାହାଯ୍ୟ କରିବା କର୍ତ୍ତବ୍ୟ । ଯେହେତୁ ଆପଣମାନେ ଦୟାକରି ଆପଣମାନଙ୍କର ଜ୍ଞାତ ଓ ଅଜ୍ଞାତ ପାପ, ଶୋକ ଓ ତାପ ମୋତେ ଅର୍ପଣ କରି ଦିଅନ୍ତୁ । ମୁଁ ସତ୍ୟ ସାକ୍ଷୀ ରଖି ପ୍ରତିଜ୍ଞା କରି ଯାଉଛି ଯେ ସେଥିପାଇଁ ମୁହିଁ ସତ୍ୟର ନିକଟ ଚିରଦାୟୀ ରହିବ । କିନ୍ତୁ ତଥାପି ଦୟାକରି ଆପଣମାନେ ମୋର ଚିରସତ୍ୟ ପଥରେ ଅସନ୍ତୁ ଏହି ମୋର ଶେଷ ପ୍ରାର୍ଥନା ।

ସତ୍ୟର ଚିରଦାୟୀ ଫକୀର ମନୁଷ୍ୟ

୩ । ୨ । ୬୨ ତାରିଖ

ପ୍ରାୟ ଘ ୨୧ ଣ୍ଟା

ହେ ମୋର ପ୍ରିୟ ସତ୍ୟ, ତୁମର ଇଚ୍ଛା ଶାନ୍ତି ଓ ସତ୍ୟ ପ୍ରତିଷ୍ଠିତ ହେଉ । ଏହାହିଁ ମୋର ଜୀବନର ଉଦ୍ଦେଶ୍ୟ, ତାହା

ତୁମ୍ଭର ଜଣା ମଧ୍ୟ ଅଛି । ଅତଏବ ମୋର ଶେଷ ପ୍ରାର୍ଥନା ଏହି ଯେ ତୁମେ ଦୟାକରି ତୁମ ଜଗତର,ଅଶାନ୍ତି । ପାପ, ତାପ, ଦୁଃଖ, କଷ୍ଟ ଯାହା କିଛି ଅଛି ସବୁ ମୋତେ ଦଥାସି ଦିଅ ତୁମର ଜଗତରେ ସତ୍ୟ ଓ ଶାନ୍ତି ପ୍ରତିଷ୍ଠିତ ହେଉ । ତୁମର ସନ୍ତାନ ସନ୍ତତି ନେଇ ସତ୍ୟ ଓ ଶାନ୍ତି ସ୍ଥାପିତ କରି ବା ହେଉ । ତୁମ ନିକଟରେ ଏହାହିଁ ଶେଷ ପ୍ରାର୍ଥନା । ମୁଁ ବିଦାୟ ନେଉଛି, ତୁମର ସତ୍ୟ ଥାଉ ।

ତୁମର ସେହି ସତ୍ୟକାମୀ ଫକିର ।

ତା ୩ । ୨ । ୫୨ ବେଳା ପ୍ରାୟ ୩ ଘଣ୍ଟା

ହେ ମୋର ଚିରନିତ୍ୟ ସତ୍ୟ ! ଅଜି ମୋତେ ବିଦାୟ ଦିଅ । ବିଦାୟ ପ୍ରାର୍ଥୀ ଫକିର

୭ । ୨ । ୫୨ ପ୍ରାୟ ୮ ଟା ସକାଳ

ସତ୍ୟଂ ସ୍ୱୟଂ ଅବତାରମ୍ ।

ସତ୍ୟ ଯୁଗର ମହାମନ୍ତ୍ର "ସତ୍ୟଂ ହି କେବଳଂ"

ଜୟ, ଚିର ନିତ୍ୟ ସତ୍ୟ ସନାତନ ଧର୍ମ୍ମର ଜୟ

ଜୟ ସତ୍ୟ ସନାତନ ଧର୍ମ୍ମର ଜୟ

ସତ୍ୟ ଯୁଗର ମହାମନ୍ତ୍ର ପ୍ରଚ୍ଚର ହେବ ।

ସତ୍ୟର ଫକିର ।

ଚିର ନିତ୍ୟ ସତ୍ୟ ସନାତନ ଧର୍ମ୍ମର ଅନୁଷ୍ଠାନ ବା ପତିଷ୍ଠା ।

ସତ୍ୟ ସନାତନ ଧର୍ମ୍ମର ଅନୁଷ୍ଠାନ ବା ପ୍ରତିଷ୍ଠା ।

ପ୍ରଥମ ଅଧିବେଶନ ଶିବରାତ୍ରୀ ଦିନ ।

ଏହି ନାମରେ ମହାପ୍ରଦୀପ ଜଳିବ ଆଉ ସବୁ କାମ ଚ୍ଚଲିବ ।

ଚିରଦିନ ପାଇଁ ଜାଣିବେ ।

"ଜୟ ସତ୍ୟଂ ଦେହି ।"

## ପ୍ରମାଣ

ଦେହୀ ନିତ୍ୟମବଧ୍ୟୋଽୟଂ ଦେହେ ସର୍ବସ୍ୟ ଭାରତ ।
ତସ୍ମାତ୍ ସର୍ବାଣି ଭୂତାନି; ନତ୍ୱଂ ଶୋଚିତୁମର୍ହସି ।
ଗୀତା । ୨ । ୩୦

ହେ ଅର୍ଜ୍ଜୁନ,

ଦେହଧାରୀ ଜୀବାତ୍ମା ମନୁଷ୍ୟଙ୍କ ଶରୀରରେ ଅବଧ୍ୟ ରୂପରେ ସର୍ବଦା ବିଦ୍ୟମାନ ଅଛନ୍ତି । ଅତଏବ ସମସ୍ତ ପ୍ରାଣିମାନଙ୍କ ନିମିତ୍ତ ତୁମ୍ଭର ଶୋକ କରିବା ଉଚିତ ନୁହେଁ ।

ଅପରେ ନିୟତାହାରାଃ ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି ।
ସର୍ବେଽପ୍ୟେତେ ଯଜ୍ଞ ବିଦୋ, ଯଜ୍ଞକ୍ଷପିତ କଳ୍ମଷା ।
ଗୀତା । ୪ । ୩୦

ଅଭ କେହି କେହି ପରିମିତ ଆହାର କରି ପ୍ରାଣକୁ ପାଣରେ ହୋମ କରନ୍ତି । ଏ ସମସ୍ତ ଯଜ୍ଞ ଜାଣନ୍ତି ଓ ଯଜ୍ଞଦ୍ୱାରା ପାପଶୂନ୍ୟ ଅଟନ୍ତି ।

7. 2. 52 At about 9½ :—

Oh my Lovely mankind ?

If you want any proof of my poor or phakir-life, please see the Gita and Consult the 4th & 2nd Chapters of Gita in 30th Slokas only and specially in the Slokas 11th to 39th at 2nd Chapter you shall have the proofs of my poor writings and poor phakir life.

Phakir for truth.

୭ । ୨ । ପ୍ରାୟ ୯୮ ଘଣ୍ଟା

ହେ ମୋର ପ୍ରିୟ ମାନବ ଜାତି ! ଯଦି ଆପଣମାନେ ମୋର ଦୁଃଖୀ ବା ଫକିର ଜୀବନର କୌଣସି ପ୍ରମାଣ ଚାହାନ୍ତି ତେବେ ଅନୁଗ୍ରହ କରି ଗୀତା ଦେଖନ୍ତୁ ଓ ଗୀତାର ୨ୟ ଓ ୪ର୍ଥ ଅଧ୍ୟାୟର କେବଳ ଶ୍ଲୋ ୩୦ କୁ ଏବଂ ବିଶେଷତଃ ୨ୟ ଅଧ୍ୟାୟର ୧୧ଠାରୁ ୩୯ ଶ୍ଲୋକ ପରାମର୍ଶ କରନ୍ତୁ । ଆପଣମାନେ ମୋର ଦୀନ ଲେଖା ଗୁଡ଼ିକର ଓ ଫକୀର ଜୀବନର ପ୍ରମାଣ ପାଇ ପାରିବେ ।

ସତ୍ୟ ନିମିତ୍ତ ଫକୀର

୧୦ । ୩ । ୫୨ ପ୍ରାୟ ଘ ୧୧-୩୦ ମିନିଟ

ଭଗବାନଙ୍କର ୪ । ୧୦ । ୩୨ ତାରିଖର ଆଦେଶ ଅନୁସାରେ ସେ ଯେ ଦୟା କରି ତାହାଙ୍କର ସତ୍ୟର ଭକ୍ତଦ୍ୱାରା ମୋ ପରି ଗରିବ ଭିଖାରୀର ଜୀବନ ଏତେ ବର୍ଷ ରକ୍ଷା କରାଇଲେ ସେଥିପାଇଁ ମୁଁ ଭଗବାନଙ୍କ ନିକଟ ଓ ତାଙ୍କର ଭକ୍ତମାନଙ୍କ ନିକଟ ଚିରଦାୟୀ ଓ ଚିରଋଣୀ ବା ଚିର କୃତଜ୍ଞ ରହିଲି । ହେ ପ୍ରଭୋ, ଆପଣ ଦୟା କରି ଆପଙ୍କର ଭକ୍ତଦ୍ୱାରା ସମାଧି ନିମିତ୍ତ ସୁବ୍ୟବସ୍ଥା କରନ୍ତୁ । ଏହାହିଁ ଶେଷ ପ୍ରାର୍ଥନା । ମୁଁ ବିଦାୟ ଗ୍ରହଣ କଲି । ତୁମ୍ଭର ସତ୍ୟ ପ୍ରକାଶ ହେଉ ।

୧୦ । ୩ । ୫୨ ପ୍ରାୟ ୨ ଟା

ଆନନ୍ଦମ୍........ପୂର୍ଣ୍ଣାନନ୍ଦମ୍ । ଆଜି ମୋର କାମନା ବାସନା ପୂର୍ଣ୍ଣ ହେଲା । ମୁଁ କିଛି ମାତ୍ର ଦରକାର ମନେ କରୁନାହିଁ । ଆଜି ମୁଁ ପୂର୍ଣ୍ଣ ସ୍ୱାଧୀନ ଜୀବମାତ୍ର । ମା ପ୍ରକୃତି ଦେବୀର ଅଧୀନ କୌଣସି ଜିନିଷ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ତେବେ ମୋର

ପ୍ରାରବ୍ଧ କର୍ମ ଭୋଗ ଥିଲେ ଭଗବାନଙ୍କ ଦୟାରୁ ନାମକୁ ମାତ୍ର ଗ୍ରହଣ କରିପାଇ ପାରେ । ତାହା ମଧ୍ୟ ମାନବର ଓ ମୋର ଇଚ୍ଛାରେ ନୁହେଁ ।

୧୧ । ୩ । ୫୨ ସକାଳ ପ୍ରାୟ ୭ଟା —

ହେ ଭକ୍ତମଣ୍ଡଳୀ ! ମୁଁ ମୋର ପ୍ରାରବ୍ଧ କର୍ମ ଶେଷ କରି ଦେହ ତ୍ୟାଗ କରିବିହିଁ । ଅତଏବ ଆପଣମାନେ ଦୟା କରି ମୋର ସମାଧି ମଧ୍ୟରେ କିଛି ମାତ୍ର ଦେବେ ନାହିଁ । କେବଳ ମାତ୍ର ଶବ ଆସନ ସହ ଦେହଟି ସମର୍ପି ଦେବେ । ମୁଁ ସ୍ୱାଧୀନଜୀବ ।

ସତ୍ୟର ଫକିର

୧୩ । ୩ । ୫୨ ରାତ୍ର ପ୍ରାୟ ୧୨ ଟା —

ବର୍ତ୍ତମାନ ଦେହ ଦୁର୍ବଳ ବଶତଃ ମୁଁ କଥା ବନ୍ଦ କରିବାକୁ ବାଧ୍ୟ ହେଲି । ଆପଣମାନେ ଦୟା କରି ବେଶି କିଛି ଜାଣିବାକୁ ଓ ଜିଜ୍ଞାସା କରିବାକୁ ଇଚ୍ଛା ନ କଲେ ଭଲ ହୁଏ । ଏପରିକି କଥା କହିବାକୁ କଷ୍ଟ ମଧ୍ୟ ହେଉଛି । ବୁକୁରେ ବାଧା ମଧ୍ୟ ଲାଗୁଛି ।

ସତ୍ୟର ଫକିର ।

୧୪ । ୩ । ୫୨ ସକାଳ ପ୍ରାୟ ୧୧ ଟା —

"ଶେଷ" ସତ୍ୟର ଆଦେଶ !

ହେ ପ୍ରିୟ ମାନବ ମଣ୍ଡଳୀ ! ଆପଣମାନଙ୍କର ଅଗ୍ନି ବିଶ୍ୱାସ ଅନୁସାରେ ଆପଣମାନଙ୍କର ମନୋବାଞ୍ଛା ପୂର୍ଣ୍ଣ କରିବାକୁ ମୁଁ ଚିରଦିନ ବାଧ୍ୟ ରହିବି । ଯଦି ଏହାର ଅନ୍ୟଥା ହୁଏ ତେବେ ଆପଣମାନେ ଦୟା କରି ମନେ କରିବେ ଯେ ଆମମାନଙ୍କର ଅଗ୍ନି ବିଶ୍ୱାସ କରା ହୋଇ ନାହିଁ । ପୁଣି ମନ ଦୃଢ଼ କରି ଅଗ୍ନି ବିଶ୍ୱାସ କରିବେ । ଆପଣମାନଙ୍କର ମନୋବାଞ୍ଛା ପୂର୍ଣ୍ଣ ହେବିହିଁ ।

ଫକିରର ଆଦେଶ ।

14. 3. 52 At about $3\frac{1}{2}$ or 4—

I will not get angry with any one and I will not talk even in any case with the public at the last trial of life I will be punished by me as to be the highest stage. Only water. No desire to Jaganath for any thing to do.

ତା ୧୪ । ୩ । ୫୨ ରଖ ପ୍ରାୟ ୩୨ କିମ୍ବା ୪ ଟା—

ମୁଁ କାହାର ପ୍ରତି କ୍ରୋଧ କରିବି ନାହିଁ ଏବଂ ଜୀବନର ଶେଷ ବର୍ଷର ସମୟରେ କୌଣସି ସାଧାରଣ ବିଷୟରେ ମଧ୍ୟ କିଛି କହିବି ନାହିଁ । ସର୍ବୋଚ୍ଚସ୍ତର ହେବାକୁ ମୁଁ ମୋଦ୍ୱାରା ଦ୍ୱାରା ଦଣ୍ଡିତ ହେବି । କେବଳ ପାଣି । ଅନ୍ୟ କିଛି କରିବାକୁ ଜଗନ୍ନାଥଙ୍କ ନିକଟରେ କିଛି ଅଭିଳାଷ ନାହିଁ ।

ତା ୧୫ । ୩ । ୫୨ ରଖ ପ୍ରାୟ ରାତ୍ର ୧୨ଟା ୧୦ ମିନିଟ—

ମୁଁ ପ୍ରକୃତିର କୌଣସି ଜିନିଷ ଗ୍ରହଣ କରିବି ନାହିଁ । ଏକାନ୍ତ ଦରକାର ମନେ କଲେ ସାମାନ୍ୟ ଜଳ ଗ୍ରହଣ କରି ପାରି ପାରେ ନତୁବା ନୁହେଁ । ଆପଣମାନେ ଦୟା କରି ଅନୁରୋଧ କରି ସରମ ପାଇବେ ନାହିଁ । ଆଉ କଥାରେ କହି ପାରୁ ନାହିଁ; ସେଥି ପାଇଁ କଥା ବନ୍ଦ ହେଲା. ଦେହ ଦୁର୍ବଳ ହେଲା କାହାର ଅନୁରୋଧ ରକ୍ଷିବି ନାହିଁ । ପାଣି ବର୍ଜ୍ୟ ମାତ୍ର ।

ସତ୍ୟର ଫକିର

ତା ୭ । ୪ । ୫୨ ରଖ

ମୋର କିଛି ଦରକାର ମନରେ କରୁ ନାହିଁ, ଏକାନ୍ତ ଦରକାର ହେଲେ ମୁଁ ବର୍ଷର କର କହୁଥିଲେ ଇଚ୍ଛାପରେ, ମୋର ଖୁସି । ଦେହ ସେବା ଦରକାର ନାହିଁ ।

ମୋର ନଶ୍ୱର ଦେହ ସେବା ବା ଘଷିବା ମୁଁ ପସନ୍ଦ ଆଉ କରୁ ନାହିଁ । ଏପର ସେବା ଆଜଠାରୁ ବନ୍ଦଥିବ । କ୍ଷମା କରିବେ, ଅଉ କେବେ ନୁହେଁ ।

ତା ୬ । ୪ । ୫୨ ରିଖ ୧୨ ଟା—

କେବଳ ମାତ୍ର ଦର୍ଶନ, ଦେହ ଦୁର୍ବଳ କ୍ଷମା କରିବେ ।

ତା ୬ । ୪ । ୫୨ ରିଖ ସକାଳ ପ୍ରାୟ ୧୨ ଟା—

ମୁଁ ଆଉ କଥା କହିବାକୁ ଇଚ୍ଛା କରୁ ନାହିଁ, କ୍ଷମା କରିବେ । ଆପଣମାନଙ୍କର କର୍ତ୍ତବ୍ୟ କରନ୍ତୁ । ମୁଁ ସନ୍ତୁଷ୍ଟ ଅଛି । ଠାକୁରଙ୍କର ଇଚ୍ଛା ।

ସତ୍ୟର ଫକୀର ।

6. 4. 52 At about 12:—

By His will I do not wish to speak with you all at present, so please excuse me. No time is fixed for this present vow of silence. You may speak whatsoever you like according to your conscience. I have no objection at all as you are all free in the universe.

Do your duty. Do not touch me even. Be careful.

Phakir.

୬ । ୪ । ୫୨ ରିଖ ପ୍ରାୟ ୧୨ ଟା ।

ଭଗବାନଙ୍କର ଇଚ୍ଛାରୁ ମୁଁ ବର୍ତ୍ତମାନ ଆପଣମାନଙ୍କ ସହିତ କଥା କହିବାକୁ ଇଚ୍ଛା କରୁନାହିଁ । ସୁତରାଂ ଅନୁଗ୍ରହ କରି ମୋତେ କ୍ଷମା କରନ୍ତୁ । ବର୍ତ୍ତମାନର ଏହି ମୌନ ବ୍ରତ ପାଇଁ କୌଣସି ସମୟ ନିର୍ଦ୍ଦିଷ୍ଟ ନାହିଁ । ଆପଣମାନଙ୍କ ବିବେକାନୁଯାୟୀ

ଆପଣମାନେ ଯା । ଇଚ୍ଛା ତାହା କହି ପାରନ୍ତି । ମୋର କୌଣସି ଆପତ୍ତି ନାହିଁ କାରଣ ବିଶ୍ୱରେ ଆପଣମାନେ ସମସ୍ତେ ସ୍ୱାଧୀନ ।

ଆପଣମାନଙ୍କର କଣ୍ଠିବ୍ୟ କରନ୍ତୁ । ମୋତେ ସ୍ପର୍ଶ ପର୍ଯ୍ୟନ୍ତ କରନ୍ତୁ ନାହିଁ । ସାବଧାନ ହୁଅନ୍ତୁ ।

ଫକୀର ।

ତା ୬ । ୪ । ୫୨ ରାତ୍ରି ପ୍ରାୟ ୧୧ ଟା ।—

କ୍ଷମା ଗ୍ଭହେଁ । ମୁଁ ଆପଣମାନଙ୍କର ସେବାରେ ଖୁସିହେଲି । ଅଭ ଦରକାର ମନେ କରୁନାହିଁ । ସାମାନ୍ୟ ଟିକିଏ ପାଣି ସେବା କରାଇ ପାରନ୍ତି । କେବଳ ବ୍ୟବସ୍ଥା ରଖିବେ ମାତ୍ର । ଛୁଇଁବା ମଧ୍ୟ ବନ୍ଦ । ସାବଧାନ ହେବେ ।

6. 4. 52 At about 2:—

I am the same and again the ever same with my versions, book and words. So please follow my versions, book and words only but please do not follow me, the destructive body. I will always live with my book, versions and words only. I am going to leave you all but I do not know "when" God knows, Phakir.

ତା । ୬ । ୪ । ୫୨ ରାତ୍ରି ପ୍ରାୟ ୨ ଟା

ମୁଁ ମୋର ବାକ୍ୟ, ବାଣୀ ଓ ବହି ସହିତ ସେହି ଏକ ପୁଣି ସେହି ଏକ । ସୁତରାଂ ଅନୁଗ୍ରହ କରି ମୋର ବାକ୍ୟ, ବାଣୀ ବା ବହି କେବଳ ଅନୁସରଣ କରନ୍ତୁ କିନ୍ତୁ ଅନୁଗ୍ରହ କରି ମୋତେ-ଏହି ଧ୍ୱଂସଶୀଳ ଶରୀରକୁ ଅନୁସରଣ କରନ୍ତୁ ନାହିଁ । ମୁଁ ସବୁ ବେଳେ ମୋର ବାକ୍ୟ, ବାଣୀ ଓ ବହି ସହିତରେ କେବଳ ସଜୀବ ଥିବି । ମୁଁ ଆପଣମାନଙ୍କୁ ସମସ୍ତଙ୍କୁ ଛାଡ଼ିବାକୁ ଯାଉଛି କିନ୍ତୁ ଜାଣେନାହିଁ । "କେତେବେଳେ" । ଭଗବାନ ଜାଣନ୍ତି । ଫକିର

ତା । ୭ । ୪ । ୫୨ ରଶ ପ୍ରାୟ ୨୩ ଟା।

ମୁଁ ମୋର ଯାବତୀୟ କଥା, ଅନୁଭୂତ ଅଉ ଯାହା କହୁ କହିବାର ଥିଲ ତାହା ସବୁହିଁ ଆପଣମାନଙ୍କୁ କହି ଦେଇଛି । ଅଉ କିଛି ଦରକାର ମନେ କରୁନାହିଁ । ଏବେ ଅପଣମାନଙ୍କର କର୍ତ୍ତବ୍ୟ କରନ୍ତୁ । ମୋର ଦ୍ୱାରା ଅପଣମାନଙ୍କର କିଛି ଦରକାର ନାହିଁ । ଦୟା କରି ମୋତେ ଅଉ କିଛି କଥା ନ ପଚାରିଲେ ମୁଁ ବିଶେଷ ଖୁସି ହେବି ।

17. 4. 52.

By his will Mouni Sadhu is doing his duty according to His order ang also according to his version of Gita. Mouni Sadhu is a mere photo or instrument before the Vast Universe. Mouni Sadhu is carrying out his order only by and by. Let Him do what he likes best for his truth, Established in the Universe. What is that to you-all and me ? You should know "Even a straw cannot move on without His desire" so now is it possible for me to move on without His desire ? Never. Never······it is He alone who is making suoh a hard austerity for the establishment of His truth. Please let Him do what he likes best as He is more perfect, more intelligent and more pure than you—all and me, The poor Phakir. Please think, feel and say.

It is said "No force is a force" No plan is a plan" "Plan is already done" "Work itself works".

Voice of Truth

ତା ୧୭ । ୪ । ୫୨ ରିଖ ।

ଭଗବାନଙ୍କର ଇଚ୍ଛାରୁ ମୌନୀ ସାଧୁ ସେହି ଭଗବାନଙ୍କର ଆଦେଶ ଓ ଗୀତା କଥିତ ମତେ ଭଗବାନଙ୍କର କାର୍ଯ୍ୟ କରୁଛନ୍ତି । ତାଙ୍କର ବିରାଟ ବିଶ୍ୱ ସମ୍ମୁଖରେ ମୌନୀ ସାଧୁ କେବଳ ଏକ ପ୍ରତିକୃତି ବା ଯନ୍ତ୍ରମାନ । ମୌନୀ ସାଧୁ ତାଙ୍କର ଆଦେଶକୁ କେବଳ ଧୀରେ ଧୀରେ ପ୍ରତିପାଳନ କରୁଛନ୍ତି । ଭଗବାନ ଯାହା ସର୍ବୋତ୍ତମ ଭାବୁଛନ୍ତି ତାହା ସେ ବିଶ୍ୱରେ ପ୍ରତିଷ୍ଠିତ ସତ୍ୟ ପାଇଁ କରନ୍ତୁ । ସେଥିରେ ଆପଣମାନଙ୍କର ବା ମୋର କଅଣ ଅଛି ? ଆପଣମାନଙ୍କର ଜାଣିବା ଉଚିତ ଯେ "ତୃଣ ଖଣ୍ଡିଏ ମଧ୍ୟ ଭଗବାନଙ୍କର ଇଚ୍ଛା ବ୍ୟତୀତ ହଲି ପାରେ ନାହିଁ ।" ସୁତରାଂ ଭଗବାନଙ୍କର ଇଚ୍ଛା ବ୍ୟତୀତ ଚଳବୁଲ କରିବା ମୋ ପକ୍ଷରେ କିପରି ସମ୍ଭବ । କଦାପି ନୁହେଁ—କଦାପି ନୁହେଁ.....ଭଗବାନହିଁ କେବଳ ତାଙ୍କ ସତ୍ୟର ପ୍ରତିଷ୍ଠା ପାଇଁ ଏପରି କଠିନ ବ୍ରତ ଆଚରଣ କରୁ ଅଛନ୍ତି । ଯେହେତୁ ଭଗବାନ ଆପଣମାନେ ସମସ୍ତେ ଓ ଏହି ଗରିବ ଫକିର ଅପେକ୍ଷା ବିଶେଷ ଭାବରେ ପୂର୍ଣ୍ଣ, ବୁଦ୍ଧିମାନ ଏବଂ ପବିତ୍ର ତେଣୁ ସେ ଯାହା ଭଲ ମନେ କରନ୍ତି ତାହା ସେ କରନ୍ତୁ । ଅନୁଗ୍ରହ କରି ଚିନ୍ତା ଓ ଅନୁଭବ କରି କହନ୍ତୁ...... କଥିତ ଅଛି, "କୌଣସି ଶକ୍ତି ଶକ୍ତି ନୁହେଁ," "କୌଣସି ଉପାୟ ଉପାୟ ନୁହେଁ," "ଆଗରୁ ଉପାୟ ସ୍ଥିର ହୋଇ ରହିଛି," "କାର୍ଯ୍ୟ ଆପେ ଆପେ କାର୍ଯ୍ୟ କରେ ।"

ସତ୍ୟର ବାଣୀ

Printed by G. Nagabhusana, The KALINGA Press, Cuttack.

